# ଭି.ଆଇ.ପି.

ଉପନ୍ୟାସ

ଲେଖକ :
ନିମାଇଁ ଭଟ୍ଟାଚାର୍ଯ୍ୟ
ଅନୁବାଦକ :
ଡଃ ପୂର୍ଣ୍ଣଚନ୍ଦ୍ର ମିଶ୍ର

ପ୍ରକାଶକ :
ରେନେସାଁ ପବ୍ଲିକେଶନ୍ସ,
ଗୋଶାଳାରୋଡ୍, ନୂଆବଜାର
କଟକ-୭୫୩୦୦୪

ମୁଦ୍ରକ :
ଟେକ୍‌ନୋଆର୍ଟସ୍ ଅଫ୍‌ସେଟ୍
କଲ୍ୟାଣୀନଗର
କଟକ-୭୫୩୦୧୩

ମୂଲ୍ୟ :
ଟ ୪୫/-
ପ୍ରଥମ ପ୍ରକାଶ :
ଶ୍ରୀପଞ୍ଚମୀ : ୨୦୦୦

---

**V.I.P.**

A novel by
Nimai Bhattacharya

Translated by
**Dr. Purna Chandra Mishra**

Published by
**RENAISSANCE PUBLICATIONS**
Gosala Road, Naya Bazar,
Cuttack-753004

Printed at
**Techno Arts Offset**
Kalyani Nagar,
Cuttack-13

Price : Rs 45/-

First Edition :
**Shreepanchami : 2000**

ମେମ୍ ସାହେବ୍,

ଏଡ଼େନ୍‌ରୁ ପୋଷ୍ଟ ହୋଇଥିବା ତୁମର ଚିଠି ପାଇଲି । ଜାଣିଲି, ବମ୍ବେରୁ ଜାହାଜ ଛାଡ଼ିବା ପରେ ସାରା ରାତି ଶୋଇ ପାରିଲ ନାହିଁ । ତୁମେ ନ ଲେଖିଲେ ବି ମୁଁ ଜାଣିପାରୁଛି, ତୁମେ ଆଖିରୁ ଲୁହର ବନ୍ୟା ଝରେଇଛ । ଜାଣିଛି, ତୁମେ ଅସହ୍ୟ ଯନ୍ତ୍ରଣାରେ ଛଟପଟ ହେଇଛ । ଗୋଟିଏ ଚନ୍ଦ୍ରାତପ ତଳେ ତୁମେ ଓ ମୁଁ ଅଛେ, ତଥାପି ଏଇ ଦୀର୍ଘ ବ୍ୟବଧାନ ଓ ସାମୟିକ ବିଚ୍ଛେଦରେ ଦୁଃଖ ଲାଗିବା ସ୍ୱାଭାବିକ । କିନ୍ତୁ ଏତେ ଉତଳା ହୁଅନା । ଥରେ ଭାବି ଦେଖିଛ ନା ମୋର କି ଅବସ୍ଥା ? ଭାବିଛ କି, ଯେଉଁ ମେମ୍ ସାହେବ ମୋର ଅଶାନ୍ତ ଜୀବନରେ ହିମାଳୟର ପ୍ରଶାନ୍ତି ଆଣିଦେଇଥିଲେ, ଯା'ର ସେଇ କଜଳକଳା ଆଖି ମୋର ସାରା ମନଟାକୁ ଭରପୂର କରିଦେଇଥିଲା, ଯାହାର ଘେନାଘେନିରେ ମୋର ମଲା ଅନ୍ତରରେ କୋକିଳର କୁହୁ ଶୁଭିଥିଲା, ଯାହାର ପ୍ରେମର ସ୍ପର୍ଶରେ ମୋର ଯୁଗଯୁଗର ନିଦ୍ରା ଭାଙ୍ଗିଲା, ଯେ ମୋ ଆଖିରେ ଭବିଷ୍ୟତର ସ୍ୱପ୍ନ ଆଙ୍କି ଦେଇଥିଲା, ସେଇ ମେମ୍‌ସାହେବଙ୍କୁ ପାଖରେ ନପାଇ ମୋର କି ଅବସ୍ଥା ? ହୁଏତ ଭାବୁଛ, ହୁଏତ ଭାବୁନ । ତଥାପି ଏଇ ବିରହ ବେଦନାରେ ବି ଅଛି ଆନନ୍ଦ, ଅଛି ଆତ୍ମତୃପ୍ତି । ମୁଁ ନିଃସଙ୍ଗ ହେଲେ ବି ନିଃସହାୟ ନୁହେଁ; ଏକ ଅନ୍ତରଦୀପର ମଙ୍ଗଳ ଶିଖା ମୋର କଲ୍ୟାଣ ଯଜ୍ଞ ପାଇଁ ଅହରହ ଜଳୁଛି ଭାବିଲେ ନିଶ୍ଚୟ ଆତ୍ମତୃପ୍ତି ମିଳୁଛି, ମିଳୁଛି ନିର୍ଭରତାର ଆନନ୍ଦ ।

ତୁମକୁ ଜାହାଜରେ ଚଢ଼େଇ ଦେଇ ଆସିଲା ପରେ ମୋର ମାନସିକ ଅବସ୍ଥା ଯେ କଣ ହୋଇଥିଲା— ସେକଥା ତୁମକୁ ଲେଖି ଜଣାଇବା ମୋର କ୍ଷମତାର ବାହାରେ । ବିକଟ ଚିତ୍କାର କରି ଜାହାଜ ଛାଡୁ ଛାଡୁ ମୋ ବୁକୁରୁ ଅଧେ ଯେମିତି ଭାଙ୍ଗିଗଲା । ତୁମେ ଡେକ୍ ଉପରୁ ରୁମାଲ୍ ହଲଉଥିଲ, ମୁଁ କିନ୍ତୁ ସ୍ପଷ୍ଟ ଭାବେ ଦେଖିପାରିଲି ନାହିଁ । ଆଖିର ଲୁହରେ ଝାପ୍‌ସା ହୋଇଉଠିଥିଲା ତୁମର ମୂର୍ତ୍ତି । ତୁମକୁ ଭଲ ପାଇ ବସିଛି, ତୁମେ ମୋର ପ୍ରେମକୁ ଭରିଦେଇଛ । କିନ୍ତୁ ଆଗରୁ ଜାଣିପାରିନି, ବୁଝିପାରିନି ତୁମେ ମୋ ହୃଦୟରେ କେତେ ଆସ୍ଥାନ ଜମେଇଛ । ଜାହାଜଟା ଅଦୃଶ୍ୟ ହୋଇ ଯାଉଯାଉ ସାରା ଦୁନିଆଟା ନିର୍ଜନ, ବନ୍ଧୁହୀନ ମନେହେଲା, ମନେହେଲା ସାହାରା ମରୁଭୂମିରେ ମୁଁ ଏକ ନିଃସଙ୍ଗ ପଥିକ, ପିପାସାରେ ଅନ୍ତର ଫାଟି ପଡୁଛି, ଚାରିଦିଗରେ ମରୀଚିକାର ନଦୀ, ମୁଁ ଏପାଖ ସେ ପାଖ ଦୌଡୁଛି— କିନ୍ତୁ ପ୍ରାଣର ତୃଷ୍ଣା ମେଣ୍ଟାଇବାକୁ ବୁନ୍ଦିଏ ପାଣି ପାଉନି । ସାତ ଦିନ ହେଲାଣି ତୁମର ଜାହାଜ ଚାଲିଗଲାଣି, ଏବେ ବି ମୁଁ ସତେ କି ସେଇ ପ୍ରାଣହୀନ, ସବୁଜିମାହୀନ ନିର୍ଦ୍ଦୟ ମରୁପ୍ରାନ୍ତରରେ ଘୂରିବୁଲୁଛି । ଯେତେଦିନ ଯାଏ ପୁଣି ତୁମକୁ ପାଖରେ ନ ପାଇଛି, ତୁମର ସଙ୍ଗୀତ ନ ଶୁଣୁଛି, ତୁମର ମୁହଁର ହସ ଆଉ ଆଖିର ଝଲକ ମୋ ପ୍ରାଣରେ ନିଆଁ ନଜଳେଇଛି, ସେତେଦିନ ଏଇ ମରୁପ୍ରାନ୍ତରରେ ସବୁଜିମାର ସ୍ପର୍ଶ ମିଳିବ ବୋଲି ଆଶା ରଖୁନି ।

ବମ୍ବେକୁ ଆସିବାର ଆଜି ଦଶଦିନ ହେଲା । ଭାବିଥିଲି ଚଞ୍ଚଳ ଦିଲ୍ଲୀକୁ ଫେରିଯିବି, କିନ୍ତୁ ହେଲାନାହିଁ । ତୁମ ଜାହାଜ ଛାଡ଼ିବାର ସାତ ଦିନ ପରେ ବି ମନକୁ ସଂଯତ କରିପାରୁନି । ଦିଲ୍ଲୀ ଫେରିବା କଥା ମଧ୍ୟ ସ୍ଥିର କରିପାରିନାହିଁ । ଶେଷରେ ସ୍ଥିର କରିଛି ଆଉ କିଛିଦିନ ଏଇ ଆରବସାଗର କୂଳରେ ବସି ରହିବି । ଅନ୍ତତଃ ଏୟା ଭାବି ଆତ୍ମତୃପ୍ତି ଲଭିବି ଯେ ତୁମେ ତ ଏଇ ସାଗର ଜଳରେ ଭାସିଚାଲିଛ । ଛୁଟି ବଢ଼େଇବା ପାଇଁ ଆଜି ନିଉଜ୍-ଏଡିଟରଙ୍କ ପାଖକୁ ଟେଲିଗ୍ରାମ୍ କରିଦେଲି । ଏଇ ପିଲାଳିଆମୀ ଯୋଗୁଁ ତୁମେ କିନ୍ତୁ ଗାଳି ଦିଅନା, କଡ଼ା କଥା କୁହନା । ତୁମେ ହୁଏତ ନୂତନତାର କୋଳରେ ଦୁଃଖକୁ ଭୁଲିଯିବ, କିନ୍ତୁ ମୁଁ ସେଇ ଚିର ପରିଚିତ ପରିବେଶରେ । ମୁଁ ଏଇ ନୂତନ ଦୁଃଖକୁ ଭୁଲିବି କେମିତି ?

ଏଡ଼େ ବଡ଼ ସହରଟାରେ ଲକ୍ଷ ଲକ୍ଷ ମଣିଷ ଭିଡ଼ ଜମେଇଛନ୍ତି, କେତେ ବନ୍ଧୁ ବିଚ୍ଛେଇହେଇ ରହିଛନ୍ତି ଚାରିପାଖେ; କିନ୍ତୁ ଏମାନେ ସତେ କି ମୋର କେହି ନୁହଁନ୍ତି । ମଣିଷମାନଙ୍କର ଚଳମାନ ପ୍ରଦର୍ଶନୀ ଦେଖି ବି ମନ ଭରୁନାହିଁ, କହିବାକୁ ଇଚ୍ଛା ହଉଛି—

ପୋଡ଼ା ମନେ ଖାଲି
ସେଇ ପୋଡ଼ା ମୁହଁ ଦିଶେରେ
ଏତେ ଲୋକବାକ

ଆଉ କେହି ନାହିଁ ସେଇ ଏକା ଖାଲି
ଏ ପୋଡ଼ା ଆଖିରେ ପଡ଼େରେ ।

'କାଫ୍ ପ୍ରେଡ୍'ର ଏଇ ବଙ୍ଗଳାରେ ବସି ସମୁଦ୍ର ଆଡ଼କୁ ଚାହିଁ ରହୁଛି ଏବଂ ଭାବୁଛି ତୁମ ଓ ମୋ କଥା । ମନେପଡୁଛି ତୁମ ସହିତ ମୋର ପ୍ରଥମ ସଂଧ୍ୟାର କଥା । ମନେପଡ଼େ, ମାଧୁର୍ଯ୍ୟଭରା ତୁମର ଓ ମୋର ପ୍ରତିଦିନର କାହାଣୀ । ସତରେ, ପ୍ରଥମ ସଂଧ୍ୟାରେ ଏତେ ଜଣଙ୍କ ଭିତରେ ତୁମକୁ ପ୍ରଥମେ ଆବିଷ୍କାର କରିପାରିଲି ନାହିଁ । କିନ୍ତୁ ତୁମର ସେଇ ଉଜ୍ଜ୍ୱଳ ଲମ୍ବାଲମ୍ବା ଦିଟା କଳା ଆଖି ଓ ମୁହଁର ହସ ଗୋଟିଏ ମୁହୂର୍ତ୍ତରେ ଭସେଇ ନେଇଯାଇଥିଲା ଏକ ନୂତନ ଅଦୃଷ୍ଟ ଆଡ଼କୁ । ମନେପଡୁଛି ସେଇ ସଂଧ୍ୟା ରାଗର ଝଙ୍କାର ? ପ୍ରଥମ ସନ୍ଧ୍ୟାର ତୀବ୍ର ଅନୁଭୂତି ?

ବହୁତ ଭାବିଲେ ବି ସେଇ ସଂଧ୍ୟାର ଭାବ ଖୋଜିପାଉନି ଭାଷାରେ । ହଠାତ୍ ବାୟରନ୍ ଆଉ କଲ୍‌ରିଜ୍ ମନେପଡ଼ିଲେ । ବାୟରନ୍‌ଙ୍କ ଭାଷାରେ ତୁମ ଆଖିରେ ପାଇଥିଲି, 'And that's best of dark and bright, meet in her aspect and her eyes' । ବାକିର ଉତ୍ତର ପାଇଲି କଲରିଜ୍‌ଙ୍କ song ରେ–

'She is not fair to outward view
as many maidens be;
Her- Lovliness I never knew
Until she smiled on me'...

ତୁମକୁ ପାଖରେ ନ ପାଇବାର ଦୁଃଖ ଭିତରେ ବି ଅତୀତର ମିଠା ସ୍ମୃତିକୁ ରୋମନ୍ଥନ କରି ବେଶ୍ ସହଜ ଲାଗୁଛି । ଭାବିପାରୁନି, ତୁମେ ପାଖରେ ନାହଁ- ନିକଟରେ ନାହଁ । ମନେହଉଛି, ଏଇ ତ ତୁମେ ଫେରିଛ, ବ୍ୟାଗ୍‌ଟିକୁ ମୋ ଲେଖା ଟେବୁଲ୍‌ରେ ରଖି ସୋଫାରେ ବସିପଡ଼ି ମୋ ଗଳାକୁ କୁଣ୍ଢେଇଧରି ଗୀତଗାଉଛ– 'ଆମାର୍ ମନେର୍ ମାଝେ ଯେ ଗାନ୍ ବାଜେ ଶୁନ୍‌ତେ କି ପାଓଗୋ !' (ମୋର ମନଗଭୀରରେ ଯେଉଁ ଗୀତ ଝଂକୃତ ହେଉଛି ତାକୁ ଶୁଣିପାରୁଛ ଗୋ !)

ଜାହାଜର ଡେକ୍ ଚେୟାରରେ ବସି ଭୂମଧ୍ୟସାଗର ଉପରେ ଦିଗନ୍ତ ବିସ୍ତୃତ ନୀଳ ଆକାଶକୁ ଦେଖୁ ଦେଖୁ ତୁମର କଣ ମନେପଡ଼େନା ସେଇସବୁ ଦିନର ସ୍ମୃତି ? ମନେପଡ଼େନା ତୁମର ବିଦେଶଯାତ୍ରାର ପୂର୍ବରାତି ଆମ ଦୁହିଁଙ୍କର ନିଶିଜାଗରଣର ପ୍ରତିମୁହୂର୍ତ୍ତର କଥା ?

ତୁମ ଚିଠିର ଶେଷରେ ବିଚିତ୍ର ଅନୁରୋଧ ପଢ଼ି ଆଶ୍ଚର୍ଯ୍ୟ ହେଲି । ପ୍ରତି ସପ୍ତାହରେ କାହିଁକି, ପ୍ରତିଦିନ ତୁମକୁ ଚିଠି ଲେଖିପାରିବି । କିନ୍ତୁ ଭି.ଆଇ.ପି. କାହାଣୀ ଲେଖିବାକୁ ଅନୁରୋଧ କାହିଁକି ? ତୁମର କୌଣସି ଅନୁରୋଧ ଆଜିଯାଏଁ 'ନାହିଁ' କରିନାହିଁ, ଭବିଷ୍ୟତରେ ମଧ୍ୟ କରିବି ନାହିଁ । ତୁମର ଅନୁରୋଧ କ୍ରମେ ପ୍ରତି ସପ୍ତାହରେ

ଭି.ଆଇ.ପି.ଙ୍କ କଥା ଲେଖିବି । ତେବେ ଶ୍ରଦ୍ଧା ସହିତ ଯାହାଙ୍କ ମିଟିଂକୁ ତୁମେ ଯାଅ, ଯାହାଙ୍କ ବକ୍ତୃତା ଖବରକାଗଜରେ ପଢ଼ି ଯାହାଙ୍କ ନିକଟରେ ତୁମେ ବିଦ୍ୟାଶିକ୍ଷା କରିଛ, ସମାବର୍ତ୍ତନ ଉତ୍ସବରେ ଯାହାଙ୍କ ହାତରୁ ଉପାଧିପତ୍ର ଗ୍ରହଣ କରିଛ, ତାହାଙ୍କ କାହାଣୀ ଶୁଣି ତୁମେ ଯଦି ଦୁଃଖିତ ହେବ, ସେଥିପାଇଁ ମୁଁ ଦାୟୀ ହେବିନାହିଁ ।

ମୋର ଅନେକ ଆଦର, ଅନେକ ସୋହାଗ ନିଅ; ଏବଂ ନିଅ...

ତୁମରି ବାଚ୍ଚୁ ।

ମିସ୍ ତାପସୀ ସେନ୍
କେୟାର୍ ମ୍ୟାନେଜର,
ରୋଜ୍‌କୋର୍ଟ୍, ଟ୍ୟାଲବଟ୍ ସ୍କୋୟାର୍
ଲଣ୍ଡନ, ଓ୍ୱେଷ୍ଟ-୩

■ ■ ■

ମେମ୍ ସାହେବ,

କାଲି ରାତିରେ ତୁମର କେବ୍ଲ ପାଇ ଜାଣିଲି ଇଂଲଣ୍ଡର ମାଟି ସ୍ପର୍ଶ କରିଛ। ଆଶା ରଖୁଛି, ଦୁଇଦିନ ଭିତରେ ତୁମର ଦୀର୍ଘ ପତ୍ର ପାଇବି; ଜାଣିବି ତୁମର ଜାହାଜ ଯାତ୍ରାର କାହାଣୀ ଏବଂ ଲଣ୍ଡନ୍‌ବାସର ଅନ୍ୟାନ୍ୟ ଖବର ଅନ୍ତର।

ମେମ୍ ସାହେବ, ଭି.ଆଇ.ପି.ଙ୍କ କଥା କ'ଣ ଲେଖିବି କୁହ ତ ? ଦେଶଟା ଦୁଇଖଣ୍ଡ ହୋଇ ସ୍ୱାଧୀନ ହେଲା ପରେ ଆଜି କିଏ ଭି.ଆଇ.ପି. ନୁହଁ କହିପାରିବ ? ସାଧାରଣ ଲୋକଙ୍କ ଧାରଣା ଯେଉଁମାନେ ଖଦଡ଼ ଟୋପି ପିନ୍ଧି ସରକାରୀ ଗଦ୍‌ଦୀ ଆବୋରି ବସିଛନ୍ତି ଏବଂ ଅନେକ ଆତ୍ମତ୍ୟାଗ ସ୍ୱୀକାର କରି ମାସିକ କେତେ ହଜାର ଟଙ୍କାର ପାରିଶ୍ରମିକର ବିନିମୟରେ ଦେଶସେବା କରୁଛନ୍ତି, କେବଳ ସେଇମାନେ ହିଁ ଭି.ଆଇ.ପି.। କିନ୍ତୁ ସେଇଟା ଠିକ୍ ନୁହଁ। ଆଜି ଭି.ଆଇ.ପି. କେବଳ ମିନିଷ୍ଟରମାନଙ୍କ ପାଖରେ ସୀମାବଦ୍ଧ ନୁହଁ। ଅଳ୍ପ ବହୁତେ ସବୁ ରାଜନୈତିକ ନେତା ଭି.ଆଇ.ପି.- ଦଳମତ ନିର୍ବିଶେଷରେ ପାର୍ଲିଆମେଣ୍ଟର ସାଢ଼େ ସାତଶହ ମେମ୍ବର ବି ପ୍ରତ୍ୟେକ ଜଣେଜଣେ ଭି.ଆଇ.ପି.। ଏତିକି ହେଲେ ତ ଚଳନ୍ତା। କିନ୍ତୁ ଦିନକାଳ ଏମିତି ହେଲାଣି ଯେ ଆକ୍ଟର, ଆକ୍ଟ୍ରେସ୍, ଶିଳ୍ପୀ, ସଙ୍ଗୀତଜ୍ଞ, ସାହିତ୍ୟିକ, ପ୍ରିନ୍‌ସିପାଲ୍-ପ୍ରଫେସର୍-ମାଷ୍ଟର୍, ଫୁଟବଲ୍ ହକି-କ୍ରିକେଟ୍-ଟେନିସ୍ ଖେଳାଳିଙ୍କଠାରୁ ଆରମ୍ଭ କରି ସବ୍-ଡେପୁଟୀ ମାଜିଷ୍ଟ୍ରେଟ୍, ଅଣ୍ଡର-ସେକ୍ରେଟାରୀ, ହେଡ୍‌-ଆସିଷ୍ଟାଣ୍ଟ, ସେକ୍ସନ ଅଫିସର ମଧ୍ୟ ସମୟ ବିଶେଷରେ ଭି.ଆଇ.ପି. ବନନ୍ତି।

ରେଡ଼ିଓରେ ଦେଶର ନାମଜାଦା ଗାୟକମାନେ ଗୀତ ଗାଆନ୍ତି। ନାନାଧରଣର ଲୋକେ ବକ୍ତୃତା ଦିଅନ୍ତି, ଅସଂଖ୍ୟ ଅଭିନେତା-ଅଭିନେତ୍ରୀ ଅଭିନୟ କରନ୍ତି। ଷ୍ଟେସନ୍-ଡାଇରେକ୍ଟର ତ ଏମାନଙ୍କର ଭାଗ୍ୟବିଧାତା ବୋଲି ମନେକରନ୍ତି। ସେକ୍ସନ ଅଫିସରଙ୍କ ଦରମାର ଅଧା ପାଇ ମଧ୍ୟ ପ୍ରୋଗ୍ରାମ୍-ଏକ୍‌ଜିକ୍ୟୁଟିଭ୍‌ମାନେ ମୁଣ୍ଡ ଉଠେଇ କଥା କହନ୍ତି ନାହିଁ। କିନ୍ତୁ ରେଡ଼ିଓ ଷ୍ଟେସନ୍‌ର ଅସଲ ଭି.ଆଇ.ପି. ହେଉଛନ୍ତି ସେଇମାନେ, ଯେଉଁମାନଙ୍କର ମୋଲାୟମ୍ କଣ୍ଠ ଶୁଣାଯାଏ- "ପଙ୍କଜ କୁମାର ମଲ୍ଲିକଙ୍କ କଣ୍ଠରୁ ରବୀନ୍ଦ୍ରନାଥଙ୍କ 'କି ପାଇନି ତାର୍ ହିସାବ ମିଲାତେ' ପରେ ଏଥର ଶୁଣନ୍ତୁ ରବୀନ୍ଦ୍ରନାଥଙ୍କ ଆଉ ଏକ ସଙ୍ଗୀତ, ଗାଇଛନ୍ତି ବିମଳଭୂଷଣ।" ଏମାନଙ୍କର କଣ୍ଠ କେବଳ ଇଥର୍‌ରେ ବିଛେଇ ହେଇଯାଏ, କିନ୍ତୁ କ୍ଷମତା ସର୍ବସ୍ତରରେ ବିସ୍ତୃତ।

ମେମ୍ ସାହେବ୍, ହୁଏତ ଭାବୁଥିବ ମୁଁ ରଙ୍ଗ ଉପରେ ପଲିସ୍ ଢାଳି ଅତିରଞ୍ଜିତ କରୁଛି; କିନ୍ତୁ ତା ନୁହେଁ। ଗ୍ରାଣ୍ଡ ହୋଟେଲକୁ ବଡ଼ ବଡ଼ ଫିଲ୍ମଷ୍ଟାର ଆସିଲେ କ'ଣ ହୁଏ ତୁମେ ଦେଖିନ ? ଦେଖିନ, ଭ୍ୟାନ ଭର୍ତ୍ତି ପୋଲିସ୍ ଏମାନଙ୍କୁ ପହରା ଦଉଥାନ୍ତି-ଡେପୁଟୀ କମିଶନର୍ ଦୌଡ଼ାଦୌଡ଼ି କରନ୍ତି ? ଜନତାଙ୍କ ଅଭିନନ୍ଦନ ଭରା ହାତରୁ

ମୁକୁଳିବା ପାଇଁ କ୍ରୁଶ୍ଚେଭ୍ ବୁଲ୍‌ଗାନିନ୍‌ଙ୍କ ଭଳି ଫୁଟବଲ୍-କ୍ରିକେଟ୍ ପ୍ଲେୟାରମାନେ ପୋଲିସ୍ ଭ୍ୟାନ୍‌ରେ ବସି ମଇଦାନରୁ ଉଭେଇଯିବା ଦେଖିଛ ? ତେବେ ଏମାନେ କ'ଣ ଭି.ଆଇ.ପି. ନୁହଁନ୍ତି ?

କ୍ଷମତାକୁ ନେଇ ବଡ଼େଇ କରିବା ଧର୍ମ ଆମମାନଙ୍କର ରକ୍ତରେ ମିଶିଯାଇଛି । ଆଖପାଖରେ ତୋଷାମଦକାରୀଙ୍କୁ ନ ଦେଖିଲେ ଆମେ ତୃପ୍ତି ପାଉନା; ଢାକଢମକ ନ ଦେଖିଲେ ମଣିଷର ଗୁରୁତ୍ୱ ସ୍ୱୀକାର କରୁନା । ଆମ ଦେଶରେ ଡିଷ୍ଟ୍ରିକ୍ ମାଜିଷ୍ଟ୍ରେଟଙ୍କୁ ନେଇ ଯେତେ ନଚାନଚି ହୁଏ, ପୃଥିବୀର ବହୁ ଦେଶରେ ପ୍ରାଇମ ମିନିଷ୍ଟରଙ୍କୁ ନେଇ ମଧ୍ୟ ସେତେ ନଚାନଚି ହୁଏନା ।

ତୁମେ ତ ବର୍ତ୍ତମାନ ଲଣ୍ଡନରେ । ଦେଖିବ, ଆମଦେଶରେ କ୍ଷମତାହୀନ ଗଭର୍ଣ୍ଣର୍‌ମାନେ ଯାତାୟାତ କଲାବେଳେ ଯେଉଁ ପୋଲିସ୍ ବ୍ୟବସ୍ଥା କରାଯାଏ, ସେଠାରେ କୁଇନ୍ ଅଥବା ମିନିଷ୍ଟର୍‌ମାନଙ୍କ ଯାତାୟାତ ସମୟରେ ତା'ର ଦଶଭାଗରୁ ଭାଗେ ପୋଲିସ୍ ବ୍ୟବସ୍ଥା ବି କରାଯାଏ ନାହିଁ । ଆମ ଦେଶର ବହୁ ମନ୍ତ୍ରୀଙ୍କ ଘର ସାମ୍ନାରେ ପୋଲିସ୍ ଓୟାରଲେସ୍ ଭ୍ୟାନ୍ ଓ କେତେ ଡଜନ୍ ରାଇଫଲ୍‌ଧାରୀ ପୋଲିସ୍ ପ୍ରହରା ଦେଉଥିଲେ ମଧ୍ୟ ଦଶନମ୍ବର ଡାଉନିଂ ଷ୍ଟ୍ରିଟ୍‌ରେ ବ୍ରିଟିଶ୍ ପ୍ରାଇମ୍‌ମିନିଷ୍ଟରଙ୍କ ଘର ଫାଟକରେ ଜଣେରୁ ଅଧିକ ପୋଲିସ୍ ଦେଖିବାକୁ ପାଇବନାହିଁ । ମିଃ ହାରଲ୍ଡ଼ ମ୍ୟାକ୍‌ମିଲାନ୍ ଯେତେବେଳେ ପ୍ରାଇମ୍ ମିନିଷ୍ଟର ଥିଲେ ସେତେବେଳେ ପ୍ରାଇମ୍‌ମିନିଷ୍ଟରଙ୍କ ସେକ୍ରେଟାରୀଙ୍କର ମାତ୍ର ସାତ-ଆଠ ଜଣ କର୍ମଚାରୀ ଥିଲେ । ଶୁଣି ଆଶ୍ଚର୍ଯ୍ୟ ହେବ, ଦଶନମ୍ବର ଡାଉନିଂ ଷ୍ଟ୍ରିଟ୍‌ରେ ବ୍ରିଟିଶ୍ ପ୍ରାଇମ୍ ମିନିଷ୍ଟରଙ୍କ କୌଣସି ଖାସ୍ ଅଫିସ୍ ଘର ନାହିଁ, ସେକ୍ରେଟେରୀଏଟ୍ ଟେବୁଲ୍ ନାହିଁ, ଫାଇଲ୍-କ୍ୟାବିନେଟ୍ ବି ନାହିଁ । କୋଡ଼ିଏ ପଚିଶ ଜଣଙ୍କ ମିଟିଂ ହେଲାଭଳି ଗୋଟେ ବିରାଟ ଟେବୁଲ୍ ପାଖରେ ବସି ପ୍ରାଇମ୍‌ମିନିଷ୍ଟର୍ କାମ କରନ୍ତି । ପ୍ରତି ମୁହୂର୍ତ୍ତରେ ଟେଲିଫୋନ୍ କରି ସେକ୍ରେଟାରୀ ବା ଅନ୍ୟ କୌଣସି ପର୍ଶନାଲ୍ ଷ୍ଟାଫ୍‌କୁ ଡାକିବା ପ୍ରଥା ମଧ୍ୟ ଦଶନମ୍ବର ଡାଉନିଂ ଷ୍ଟ୍ରିଟ୍‌ରେ ନାହିଁ । ମ୍ୟାକ୍‌ମିଲାନ୍ ନିଜେ ଉଠିଯାଇ ସେକ୍ରେଟାରୀଙ୍କୁ ଡାକି ଆଣନ୍ତି ।

ଆହୁରି ବି ଭାବି ଦେଖ— ଆମର ମିନିଷ୍ଟର୍, ଡେପୁଟୀ ମିନିଷ୍ଟର୍ ବା ବଡ଼ ବଡ଼ ଅଫିସର୍‌ମାନଙ୍କ କଥା । ଉଠୁଣୁ ବସୁଣୁ, ଚାଲିଲେ-କାଶିଲେ, ଝିଅର ସିନେମା ଟିକେଟ୍ କାଟିବାରେ, ପୁଅକୁ ଟେଷ୍ଟ ମ୍ୟାଚ୍ ଦେଖାଇବାରେ, ସ୍ତ୍ରୀଙ୍କ ମାର୍କେଟିଂ କରିବା ପାଇଁ ଆମର ଲିଡର୍‌ମାନେ ସେକ୍ରେଟାରୀମାନଙ୍କୁ ନ ଦେଖିଲେ ସତେକି ବିଶ୍ୱଭୁବନ ଅନ୍ଧକାର ଦିଶେ । ବିଶ୍ୱବିଖ୍ୟାତ ମ୍ୟାକ୍‌ମିଲାନ୍ କମ୍ପାନୀର ମାଲିକ ତଥା ଭୂତପୂର୍ବ ପ୍ରାଇମ୍ ମିନିଷ୍ଟର୍ ମିଃ ହାରଲ୍ଡ଼ ମ୍ୟାକ୍‌ମିଲାନ୍ ବସ୍ ପାଇଁ ଲାଇନ୍‌ରେ ଛିଡ଼ା ହେବାର ଛବି ଆମ ଦେଶର ଖବରକାଗଜରେ ବି ବାହାରିଛି; କିନ୍ତୁ କୌଣସି କମ୍ପାନୀର ମାଲିକ ନହେଲେ ବି

କାମରାଜପ୍ଲାନ୍ ମୁତାବକ ଗାଦ୍‌ଦୀ ଛାଡ଼ିବା ପରେ ଆମର କୌଣସି ଜଣେ ବି ନେତାଙ୍କୁ ଟ୍ୟାକ୍ସୀ ନକରି ଘୂରିବା ଦେଖିଲି ନାହିଁ । ସେମାନେ କ୍ୟାପିଟାଲିଷ୍ଟ ଆଉ ଆମେ ସୋସାଲିଷ୍ଟ କି ନା – ସେଇଥି ପାଇଁ ଏସବୁ ହୁଏ ।

ମେମ୍ ସାହେବ, ଆମ ଦେଶର ସୋସ୍ୟାଲିଜିମ୍‌ର ଢଙ୍ଗଟା ହିଁ ଅଲଗା । ପ୍ୟାରିସ୍‌ରେ ଫ୍ରେଞ୍ଚ ଫରେନ୍ ମିନିଷ୍ଟ୍ରିକୁ ଗଲେ ତାଜ୍‌ଜୁବ୍ ହୋଇଯିବ । କୌଣସି କୋଠରୀର ଦରଜାରେ କୌଣସି ନେମ୍‌ପ୍ଲେଟ୍ ଦେଖିବାକୁ ପାଇବ ନାହିଁ । ସବୁ କୋଠରୀର ସାଇଜ୍ ଓ ଫର୍ଣ୍ଣିଚର ଗୋଟିଏ ପ୍ରକାରର ଦେଖିବ । ଜଣେ ବି ଚପରାସୀ ବା ବେହେରା ତୁମ ନଜରରେ ପଡ଼ିବେ ନାହିଁ । ବାହାରର କୌଣସି ଲୋକ ଜାଣିବା ସମ୍ଭବ ନୁହେଁ ଯେ କିଏ ବଡ଼ ଆଉ କିଏ ସାନ । କିନ୍ତୁ ରାଇଟର୍ସ ବିଲ୍‌ଡିଂକୁ ଯାଅ, ଦେଖିବ କୌଣସି କୌଣସି କୋଠରୀର ଦରଜାରେ ଡଜନ୍ ଡଜନ୍ ସାଇନ୍‌ବୋର୍ଡ଼ ଝୁଲୁଛି । ଶହ ଶହ କ୍ଲର୍କଙ୍କ ଗହଣରେ ବସିଥିଲେ ବି ହେଡ଼ ଆସିଷ୍ଟାଣ୍ଟଙ୍କୁ ଚିହ୍ନିବାରେ ବିନ୍ଦୁମାତ୍ର କଷ୍ଟ ହେବନାହିଁ; ଦେଖିବ ସମସ୍ତଙ୍କ ଅପେକ୍ଷା ତାଙ୍କ ଟେବୁଲଟା ବଡ଼ ଏବଂ ତାହା ପୁଣି ତେରେଛା କରି ପକାଯାଇଛି । ଆମେମାନେ ସୋସ୍ୟାଲିଷ୍ଟ, ଆମେମାନେ ଗରିବ- ସେଇଥିପାଇଁ ତ ଆଭିଜାତ୍ୟ ପ୍ରଚାରରେ ଆମେ ଅଦ୍ୱିତୀୟ - ସରକାରୀ ଦପ୍ତରମାନଙ୍କରେ ଚପରାସୀ-ବେହେରା ମେଳମେଳ । ୟୁରୋପ ଧନୀ ଦେଶ- ସେଇଥିପାଇଁ ସେମାନେ ବେହେରା ଚପରାସୀ ରଖନ୍ତି ନାହିଁ ।

ମେମ୍‌ସାହେବ, ଆମ ଦେଶର ଭି.ଆଇ.ପି.ମାନଙ୍କର କାହାଣୀକୁ ନେଇ ମହାଭାରତ ଲେଖାଯାଇପାରିବ । ପୃଥିବୀର ଅଧିକାଂଶ ଦେଶରେ ବିନା ଭଡ଼ାରେ ମନ୍ତ୍ରୀମାନଙ୍କୁ ସରକାରୀ ବଙ୍ଗଳା ଯୋଗାଇଦେବାର ବ୍ୟବସ୍ଥା ନଥିଲେ ବି ସୋସ୍ୟାଲିଷ୍ଟ ପ୍ୟାଟେର୍ଣ୍ଣର ସୂତିକା ଘର ଦିଲ୍ଲୀରେ ଅଛି । କେବଳ ସେତିକି ନୁହେଁ, ସରକାରୀ ତହବିଲ୍‌ରୁ ସତୁରୀ-ଅଶୀ ହଜାର ଟଙ୍କା ବ୍ୟୟ କରି ସେସବୁ ବଙ୍ଗଳାକୁ ସଜାଇବାର ବ୍ୟବସ୍ଥା ରହିଛି । ତଥାପି ଅନେକ ମନ୍ତ୍ରୀ ଆକ୍ଷେପ କରନ୍ତି ଏସବୁ ବଙ୍ଗଳାଗୁଡ଼ିକ କୁଆଡ଼େ ଜୀବଜନ୍ତୁମାନଙ୍କ ଛଡ଼ା ମନୁଷ୍ୟ ବାସୋପଯୋଗୀ ନୁହେଁ । ସେ ଯାହା ହେଉନା କାହିଁକି, ଭୁବନେଶ୍ୱରଗେଁ ସୋସ୍ୟାଲିଜିମ୍‌ର ନୂତନ ପ୍ରସ୍ତାବ ପାଶ୍ ହେଲା ପରେ ଅବସ୍ଥାରେ ଉନ୍ନତି ଘଟିଛି । ସୋସ୍ୟାଲିଜିମ୍‌ର କଷ୍ଟୋଡ଼ିୟାନ୍‌ମାନେ ଏବେ ଆମ୍ବାସେଡର୍ ଛାଡ଼ି ପ୍ରାୟ ଲକ୍ଷାଧିକ ଟଙ୍କା ଦାମ୍‌ର ଏୟାର କଣ୍ଡିସନ୍‌ଡ଼ 'ଇମ୍ପାଲା' ଚଢ଼ିବା ଆରମ୍ଭ କରିଛନ୍ତି । ଏପାଖରେ ସାରା ଦେଶର ଖବରକାଗଜମାନଙ୍କରେ ବିଜ୍ଞାପନ ଦିଆଯାଉଛି— ଜନସାଧାରଣ, ଟାଇଟେନ୍ ୟୋର୍ ବେଲ୍‌ଟ, ପ୍ରଡ୍ୟୁସ୍ ମୋର୍ ଏଣ୍ଡ କନ୍‌ଜିଉମ୍ ଲେସ୍ । ଆଉ ଯେଉଁମାନେ ଏଇ ବିଜ୍ଞାପନ ପ୍ରଚାର କରୁଛନ୍ତି ସେମାନେ ଏୟାର-କଣ୍ଡିସନ୍‌ଡ଼ ଗାଡ଼ିରେ ବସି ଅଣ୍ଟାରୁ ସବୁ ବନ୍ଧନ ଖୋଲିଦେଇ ହାଇ ମାରି ସାରି ଚୁଟ୍‌କି ବଜଉଛନ୍ତି ।

ମେମ୍‌ସାହେବ, ତୁମେ କହିଛ ବୋଲି ଏଇସବୁ ଭି.ଆଇ.ପି.ମାନଙ୍କ କଥା ତୁମକୁ ଲେଖିବା ଆରମ୍ଭ କରିଛି । ନହେଲେ ଏସବୁ କାହାଣୀ କାହାକୁ ଶୁଣାଇବା ଯୋଗ୍ୟ ନୁହେଁ । ଏମାନଙ୍କୁ ଯେତେ ଦେଖେ, ସେତେ ଲଜ୍ଜାରେ, ଦୁଃଖରେ ଏବଂ ଅପମାନରେ ମୁଣ୍ଡ ତଳକୁ ନଇଁଯାଏ । ଏଇ ଚିଠି ପଢ଼ି ଚମକି ପଡ଼ନା । ଏଇ ତ ଅଯମାରମ୍ଭ । ବିସ୍ମିତ ହେବା ପାଇଁ ବହୁତ କିଛି ରହିଛି ।

ପରନିନ୍ଦାରେ ହିଁ ଚିଠିଟିକୁ ଭର୍ତ୍ତି କରିଦେଲି । ଏବେ କୁହ, ତୁମେ କେମିତି ଅଛ ? ବାଚ୍ଛୁ-ବିହୀନ ଦିନଗୁଡ଼ିକ କାଟୁଚୁ କେମିତି ? ରୋଦନଭରା ବସନ୍ତକୁ ଶେଷକରି ପୁଣି ଅର୍ଜୁନ ଜ୍ଞାନରେ ତୁମେ ଚିତ୍ରାଙ୍ଗଦା ସାଜି ମୋ ପାଖକୁ ଫେରିଆସିବ, ମୁଁ କେବଳ ସେୟା ଭାବୁଛି ।

ଆସନ୍ତାକାଲି ଫ୍ରଣ୍ଟିୟର୍ ମେଲ୍‌ରେ ଦିଲ୍ଲୀ ଯାଉଛି । ଏ ଚିଠିର ଉତ୍ତର ଦିଲ୍ଲୀକୁ ଲେଖିବ । ଅନେକ ଆଦର ରହିଲା ।

—ତୁମରି ବାଚ୍ଛୁ

ମେମ୍ ସାହେବ,

ରିକ୍ତ ମନ ଧରି ରୁକ୍ଷ ଦିଲ୍ଲୀକୁ ଫେରିଆସିଲି । ବହୁଦିନ ପରେ ଏଇ ପ୍ରଥମଥର ପାଇଁ ବାହାରୁ ଦିଲ୍ଲୀକୁ ଫେରିଲି । ତୁମେ ମୋତେ ରିସିଭ୍ କରିବାକୁ ନାହଁ । ବମ୍ବେରେ ଯାହାବି ହଉ ସାନ୍ତ୍ୱନା ଥିଲା । କିନ୍ତୁ ଏଠି ପ୍ରତି ପଦପାତରେ ତୁମର ସ୍ନେହସୋହାଗର ସ୍ମୃତି ଖେଞ୍ଚି ପକଉଛି । ଷ୍ଟେସନ୍‌ରେ ଓହ୍ଲଉ ଓହ୍ଲଉ ପ୍ରଥମ ଚିନ୍ତା ହେଲା, କିଏ ମୋ ଘରକୁ ସଜେଇଦେବ ? ସଂଧ୍ୟାବେଳେ କିଏ ମୋ କୋଠରୀରେ ବତୀ ଜଳେଇଦବ ? କିଏ ମୋ ହାତ ଧରି ଇଣ୍ଡିଆଗେଟ୍‌ର କଡ଼େ କଡ଼େ ବୁଲେଇ ବୁଲେଇ ସଙ୍ଗୀତ ଶୁଣେଇବ ? କିଏ ଭୋର ଭୋରରୁ ଟେଲିଫୋନ୍ କରି ମୋ ନିଦ ଭାଙ୍ଗିବ ?

ଷ୍ଟେସନ୍‌ରୁ ଆସି ରିସେପ୍‌ସନ୍ କାଉଣ୍ଟର୍‌ରୁ କୋଠରୀର ଚାବି ଆଣୁ ଆଣୁ ମଥୁରା ବିଡ଼ାଏ ଚିଠିପତ୍ର ଦେଲା । ଏୟାର ମେଲ୍ କଭରଟାକୁ ଦେଖାଇ ମଥୁରା କହିଲା, ବାବୁଜୀ ବିଲାଏତ୍‌ସେ ଦିଦିମଣି ଲିଖ୍‌ଖା ହୋଗା, ପଢ଼ିଏ ନା । ଦେଖୋ ନା ବାବୁଜି, ଦିଦିମଣିଙ୍କର କିଛି କଷ୍ଟ ହଉନି ତ ?

କ'ଣ ଆଉ କରନ୍ତି, କାଉଣ୍ଟର୍ ସାମନାରେ ଛିଡ଼ା ହୋଇ ଚିଠିଟାକୁ ପଢ଼ି ପକେଇଲି । ମଥୁରାକୁ କହିଲି, ଦିଦିମଣି ଲେଖିଛନ୍ତି ମୋର ଦେଖାଶୁଣା କରିବାକୁ ଘରେ ରହିବାକୁ, ଘରଦ୍ୱାର ସଜାଇବାକୁ ।

ମଥୁରା କ'ଣ କଲା ଜାଣିଚନା ? ଖଇନି ଗୁଣ୍ଡରୁ କଳେ ଢାକି ମୁରୁକି ମୁରୁକି ହସିଲା । ପରେ ଶୁଣିଲି, ତୁମେ ତାକୁ ସବୁ କାମଧନ୍ଦା ଶିଖେଇ ଦେଇଯାଇଛ । ଆଉ

ତା'ର ନୂତନ ପୁତ୍ରବଧୂ ପାଇଁ ଖଣ୍ଡେ ଶାଢ଼ି ଓ ପନ୍ଦର ଟଙ୍କା ଦେଇଯାଇଛ । ସୁତରାଂ ତୁମଠୁ ଲାଞ୍ଛ ନେଇ ମଥୁରା ମୋର ଦାସାନୁଦାସ ହୋଇ ସେବା ଯତ୍ନ କରିବାରେ ଲାଗିଯାଇଛି । ମୋ ପାଇଁ ତୁମର ଏତେ ଦୁଶ୍ଚିନ୍ତା । କେମିତି ତେବେ କାଟୁଛ ଦିନଗୁଡ଼ିକ ?

ଘରକୁ ଫେରି ଶୋଇ ଶୋଇ ତମର ଚିଠିଟିକୁ କେତେଥର ପଢ଼ି ପକେଇଲି । ତାପରେ ଅନ୍ୟାନ୍ୟ ଚିଠିପତ୍ର ଭିତରୁ ମିସ୍ ପାର୍କରର ଚିଠି ପାଇ ଅବାକ୍ ହେଇପଡ଼ିଲି । ଲେଖିଛି, କେନିକୁ ନେଇ ସେ ଶନିବାର ଦିଲ୍ଲୀ ଆସୁଛି ଏବଂ ସୋମବାର କେନିକୁ ମେଡ଼ିକାଲ୍ ଇନ୍‌ଷ୍ଟିଚ୍ୟୁଟ୍‌ରେ ଭର୍ତ୍ତି କରାଇବ ।

ଜାଣିଛ ମେମ୍ ସାହେବ, ମିସ୍ ପାର୍କର୍‌କୁ ମୁଁ ବହୁତ ଭଲପାଏ । ନିଜର ଛୋଟ ଭଉଣୀ ନାହିଁ, କିନ୍ତୁ ସେ ମୋର ସେଇ ଅଭାବକୁ ଦୂର କରୁଛି । ପୂରା ମନପ୍ରାଣଦେଇ ଚାହିଁଛି ଯେ ତା'ର ଓ କେନିର ବିବାହ ହେଉ ଏବଂ ସେମାନେ ଯେମିତି ସୁଖୀ ହୁଅନ୍ତୁ । କିନ୍ତୁ କାହିଁକି କେଜାଣି, ଭଗବାନ ଯେମିତି ସେମାନଙ୍କର ସୁଖ ଦେଖିବାକୁ ନାରାଜ । ସେଇଥିପାଇଁ ହିଁ ସେମାନଙ୍କ ଜୀବନରେ ସୁଖର ସୂର୍ଯ୍ୟ ଉଇଁବା ମାତ୍ରେ ଦୁଃଖର ମେଘ ତାକୁ ଢାଙ୍କି ପକଉଛି—ଥରେ ନୁହେଁ, ବୁହତ ଥର ।

ଅନେକ ଦିନ ପୂର୍ବେ ଜଣେ ଭି.ଆଇ.ପି.ଙ୍କ ଟୁର୍ କଭର୍ କରୁଥିଲି ମୁଁ । ଓରିଏଣ୍ଟ୍ ଏୟାର୍‌ଲାଇନ୍ସର ଯେଉଁ ଚାର୍ଟାଡ଼ ସ୍କାଇମାଷ୍ଟର୍‌ରେ ଆମେ ଘୂରୁଥିଲୁ, ମିସ୍ ପାର୍କର ଥିଲା ତାର ଏୟାର୍-ହୋଷ୍ଟେସ୍ । ଏଇ ତନ୍ୱୀ ଆଙ୍ଗ୍ଲୋଇଣ୍ଡିଆନ୍ ଏୟାର-ହୋଷ୍ଟେସ୍ ପ୍ରତି ଅନେକେ ସତୃଷ୍ଣ ଦୃଷ୍ଟିଦାନ କରୁଥିଲେ । ସେଇଆ ମୋର ମନେ ହେଉଥିଲା । ଦୁଇଧାଡ଼ି ସିଟ୍ ମଝିର୍ ଛୋଟ ରାସ୍ତାରେ ମିସ୍ ପାର୍କର୍ ଯାତାୟତ କରୁଥିଲାବେଳେ ଅନେକେ ସ୍ୱେଚ୍ଛାରେ ଏବଂ ଅନେକେ ମାପିଚୁପି ପ୍ରତିବନ୍ଧକ ହୋଇ ଛିଡ଼ା ହେଉଥିଲେ । କଲିକତାର ବସ୍‌ରେ ଟ୍ରାମ୍‌ରେ ଯେମିତି କେତେକ ନିର୍ଲଜ୍ଜ ଅସଭ୍ୟ ଲୋକ ଲେଡିଜ୍ ସିଟ୍‌ଗୁଡ଼ିକ ପାଖରେ ଦୁର୍ଭିକ୍ଷ ପ୍ରପୀଡ଼ିତ ଚାହାଣୀ ସହ ଈଷତ୍ ମୋଲାୟମ୍ ସ୍ପର୍ଶ ପାଇବା ଆଶାରେ ଛିଡ଼ା ହୁଅନ୍ତି, ଆମର ଏଇ ଭି.ଆଇ.ପି. ପାର୍ଟିର ମୁଭ୍‌ମେଣ୍ଟ-ଲିଆସନ୍ ଅଫିସର୍ ତଥା ଓରିଏଣ୍ଟ ଏୟାର୍‌ଲାଇନ୍ସର ଡେପୁଟୀ ଜେନେରାଲ୍ ମ୍ୟାନେଜର ମିଃ ଉଇଗ୍ ବି ସେପରି ଭାବରେ ମିସ୍ ପାର୍କର୍‌ର ମୋଲାୟମ୍ ସ୍ପର୍ଶ ପାଇବା ପାଇଁ ଚେଷ୍ଟା କରିଥିଲେ ଆମ ସମସ୍ତଙ୍କ ସାମନାରେ । ମିସ୍ ପାର୍କର୍‌ର ଅଶ୍ୱସ୍ତି ମୁଁ ଲକ୍ଷ୍ୟ କରିଥିଲି । କିନ୍ତୁ ବେଶ୍ ବୁଝିପାରୁଥିଲି ଯେ ଅସହ୍ୟ ହେଲେ ମଧ୍ୟ ତାକୁ ସହ୍ୟ କରିବାକୁ ପଡୁଥିଲା । ଉଇଗ୍‌ଙ୍କ ଭଳି ଜଣେ ସିନିୟର୍ ଅଫିସର୍‌ଙ୍କୁ କିଛି କହିବା ତା ପରି ଜଣେ ସାମାନ୍ୟ ଏୟାର୍-ହୋଷ୍ଟେସ୍ ପକ୍ଷରେ ନିତାନ୍ତ ଅସମ୍ଭବ ଥିଲା ।

ବାଙ୍ଗାଲୋରରେ ଦିନେ ଏକ କକ୍‌ଟେଲ ପାର୍ଟିରେ ମିସ୍ ପାର୍କର୍‌କୁ ନେଇ ଉଇଗ୍ ଖୁବ୍ ହୈ ଚୈ କଲେ— ସାଙ୍ଗରେ ମଧ୍ୟ ଡାନ୍‌ସ କଲେ । ମଧ୍ୟରାତ୍ରୀରେ କକ୍‌ଟେଲ୍

ଶେଷ ହେଲାପରେ ବି ଉଇଗ୍‌ଙ୍କର ଆଖିରୁ ନିଶା ଛାଡ଼ିଲାନାହିଁ । ମିସ୍ ପାର୍କର୍‌କୁ ନେଇ ହୋଟେଲ୍‌ର ନିଜ ରୁମ୍‌କୁ ନେଇଗଲେ । ପେଟି-ଭର୍ତ୍ତି ହ୍ୱାଇଟ୍‌ହର୍ସ ତେଣ୍ଡି ନିଜ ନିଜ ବିଛଣାରେ ଶୋଇ ସଭିଏଁ ଯେତେବେଳେ ସ୍ୱର୍ଗଜୟ କରୁଥାନ୍ତି, ମୁଁ ସେତେବେଳେ ବାରଣ୍ଡା କୋଣରେ ଠିଆହେଇ ଉଇଗ୍‌ଙ୍କ ରୁମ୍‌ର ଦରଜା ଉପରେ ନିଘା ରଖିଥିଲି । ରାତି ପ୍ରାୟ ଦୁଇଟା କି ଅଢ଼େଇଟା ବେଳେ ମିସ୍ ପାର୍କର ଉଇଗ୍‌ଙ୍କ ରୁମ୍‌ରୁ ବାହାରି ଆସିଲା ବାରଣ୍ଡାକୁ । ଧୀର ପଦକ୍ଷେପରେ ମିସ୍ ପାର୍କର୍ ନିଜ ରୁମ୍ ଆଡ଼କୁ ଯିବା ବେଳେ ବାରଣ୍ଡାରେ ମୋତେ ଦେଖି ଲଜ୍ଜିତ ହୋଇ ଟିକିଏ ଚଞ୍ଚଳ ପଦପାତ୍‌ରେ ଚାଲିଯାଉଥିଲା । କିନ୍ତୁ ମୁଁ ଡାକ ମାରିଲି, 'ମିସ୍ ପାର୍କର୍ !'

ଦାନ୍ତରେ ନଖ ଖୁଣ୍ଟି ଖୁଣ୍ଟି ମିସ୍ ପାର୍କର୍ ମୁଣ୍ଡ ତଳକୁ କରି ଠିଆ ହେଲା । ମୁଁ ତା ପାଖକୁ ଆଗେଇଗଲି । ତା'ର ମୁହଁକୁ ମୁଁ ଚାହିଁ ପାରିଲି ନାହିଁ । ଗୋଟିଏ ପଲକରେ ମୋର ମନେହେଲା, କୌଣସି ଦସ୍ୟୁ ଯେମିତି ଏଇ ଫୁଲଟିର ପାଖୁଡ଼ାଗୁଡ଼ିକୁ ଛିଣ୍ଡେଇ ପକେଇଛି । ମୁଣ୍ଡ ତଳକୁ କରି ମୁଁ କହିଲି, 'ଆଇ ଆମ୍ ସରି ମିସ୍ ପାର୍କର୍, ଚାକିରି କରିବ ବୋଲି ନିଜକୁ ଏତେଟା ବିକ୍ରି କରିବା କେତେ ଅସହ୍ୟ, ନୁହେଁ ?'

ମିସ୍ ପାର୍କର୍ ଅବାକ୍ ହୋଇ ମୋ ମୁହଁକୁ ହାଁ କରି ଚାହିଁ କହିଲା, 'ଅଦୃଷ୍ଟ ଛଡ଼ା କ'ଣ ଆଉ କହିବି କୁହନ୍ତୁ ।'

ଏତେ ରାତିରେ କଥାକୁ ଆଉ ନ ବଢ଼େଇ କେବଳ କହିଲି, 'ଯାଆନ୍ତୁ, ବିଶ୍ରାମ କରନ୍ତୁ ।'

ପରଦିନ ନ୍ୟାସନାଲ୍ ୟୁନିଅନ୍‌ର ଏକ ରିସେପସନ୍‌ରେ ମିଃ ଉଇଗ୍, ମିସ୍ ପାର୍କର୍‌କୁ ଟାଣି ନେଇ ଯାଉଥିଲା ବେଳେ ମୁଁ ବାଧା ଦେଲି । ହସି ହସି କହିଲି- 'କାହିଁକି, ଆମ ସାଥିରେ କ'ଣ ଆଡ୍‌ଡା ଜମେଇ ହବନି ?'

ଅନନ୍ୟୋପାୟ ହୋଇ ମିଃ ଉଇଗ୍ ଆମ ଗହଣରେ ରହିଲେ ଏବଂ ମୁଁ ଅତି ଆନନ୍ଦରେ ଉଇଗ୍‌ଙ୍କ ଗ୍ଲାସ୍‌ରେ ମଦ ଢାଳିବା ଆରମ୍ଭ କରିଦେଲି । ଶେଷରେ ବେହୋସ୍ ହବା ପରେ ତାଙ୍କୁ କୌଣସିମତେ ଧରାଧରି କରି ଗାଡ଼ିରେ ଚଢ଼େଇ ହୋଟେଲକୁ ଆଣି ତାଙ୍କ କୋଠରୀରେ ଶୁଆଇଦେଲି । ରାତିଅଧରେ ଉଠି ଯେମିତି ବିରକ୍ତ ନକରନ୍ତି ସେଥିପାଇଁ ବାହାରପଟୁ କବାଟ ବନ୍ଦ କରିଦେଲି । ଆଉ କଣ କଲି ଜାଣିଚ ମେମ୍ ସାହେବ ? ହଠାତ୍ କେହି ଆସି କୌଣସି କାରଣରୁ କବାଟ ଖୋଲିପାରେ ଭାବି କବାଟରେ ପ୍ଲିଜ୍ ଡୋଣ୍ଟ ଡିସ୍‌ଟର୍ବ ବୋର୍ଡ଼ଟା ଝୁଲେଇ ଦେଲି । ପରଦିନ ସକାଳେ ଉଇଗ୍‌ଙ୍କର ନିଦ ଭାଙ୍ଗିବା ପୂର୍ବରୁ ମୁଁ ତାଙ୍କ କବାଟ ଖୋଲି ବୋର୍ଡ଼ଟା କାଢ଼ିଦେଲି ।

ବ୍ରେକ୍‌ଫାଷ୍ଟ ଟେବୁଲ୍‌ରେ ଉଇଗ୍‌ଙ୍କ ସଙ୍ଗେ ଦେଖାହେଲାରୁ କହିଲେ, 'ଇଉ ନଟୀ ବୟ ! ୟୁ ମେଡ୍ ମି ଡାଉନ୍ ଲାଷ୍ଟ ନାଇଟ୍ ।'

ମୁଁ କହିଲି, 'ମିଃ ଉଇଗ୍, ଭଲ ଗୁରୁ ମିଳିନାହାନ୍ତି ବୋଲି ମୁଁ ଏବେ ବି ଡ୍ରିଙ୍କ୍ କରେନା । ଠିକ୍ କରିଥିଲି ତୁମକୁ ପରୀକ୍ଷା କରି ଦେଖିବି ଗୁରୁ ରୂପେ ଗ୍ରହଣ କରାଯାଇପାରେ କି ନା ।' କଫି କପ୍‌ରେ ଚୁମକ ଦେଇ ପୁଣି କହିଲି, 'କିନ୍ତୁ କାଲି ରାତିରେ ଦେଖିଲି, ତୁମେ ଖାଲି ପାଟିରେ ଗୁଡ଼ାଏ ବକ୍ ବକ୍ କର ସିନା କିନ୍ତୁ ପ୍ରକୃତରେ କିଛି ବି ପିଇ ପାରନାହିଁ ।'

ଉଇଗ୍ ସାହେବଙ୍କ ଆତ୍ମସମ୍ମାନରେ ଭୀଷଣ ଆଘାତ ଲାଗିଲା । କହିଲେ, 'ଡ୍ୟାମ୍ ଚ୍ୟାପ୍, ଡୋଣ୍ଟ୍ ଟକ୍ । ଇଚ୍ଛା କଲେ କେତେ ବୋତଲ ସୋଡ଼ା ସହିତ ତମକୁ ବି ପିଇ ଦେଇପାରେ ।'

'ବାଜେ କଥା କୁହନା ସାହେବ । ଝିଅମାନଙ୍କ ସାଥୀରେ ଦୁଷ୍ଟାମୀ କରିବା ଛଡ଼ା ତୁମେ ଆଉ ଘୋଡ଼ା ଡିମ୍ବଟା ଜାଣିଚ ।'

ଟେବୁଲ୍ ବାଡ଼େଇ ଉଇଗ୍ ସାହେବ ଚିତ୍କାର କରିଉଠିଲେ । ମୁଁ ବି ଟେବୁଲ୍ ବାଡ଼େଇ ପାଲଟା ଚିତ୍କାର କଲି । କହିଲି, 'ତୁମେ ଯଦି ବାପ୍ କା ବେଟା ତେବେ ଆସ, ମୋ ସହିତ ବାଜି ଲଢୁନା ।'

ଉଇଗ୍ ସାହେବ ସଙ୍ଗେ ସଙ୍ଗେ ପକେଟରୁ ପର୍ଶଟା କାଢ଼ି ଟେବୁଲ୍ ଉପରେ ଫୋପାଡ଼ି ଦେଇ କହିଲେ, 'ଦେଶାଇ, କିପ୍ ଇଟ୍ ଉଇଥ୍ ୟୁ । ଏଇ ଟୋକା ଯଦି ମୋତେ ମାତାଲ୍ କରିଦିଏ ତେବେ ତାକୁ ପର୍ଶଟା ଦେଇଦବ ।'

ଏଥର ମୋ ଆଡ଼କୁ ଆଙ୍ଗୁଠି ଦେଖେଇ କହିଲେ, 'ମାଇଁ ଡିଅର ଲଭ୍‌ଲି ୟଙ୍ଗ୍ ବୟ, ତୁମେ ତାହେଲେ କ'ଣ ଦବ କୁହ ?'

'ବୋତଲେ କିଙ୍ଗ୍ ଅଫ୍ କିଙ୍ଗ୍‌ସ ।'

'ଲଭ୍‌ଲି, ଲଭ୍‌ଲି ।'

ଦ୍ରୌପଦୀକୁ ପଣ ରଖି ପାଣ୍ଡବମାନେ ପଶା ନେଇ ବସିଥିଲେ । ସେଦିନ ସଂଧ୍ୟାରେ ବାଙ୍ଗାଲୋର୍‌ରେ ସେଇ କୁତ୍ସିତ କଦର୍ଯ୍ୟ ଉଇଗ୍ ହାତରୁ ଅନ୍ତତଃ ଗୋଟିଏ ରାତି ପାଇଁ ଅପରିଚିତା ଜଣେ ଆଙ୍ଗ୍ଲୋଇଣ୍ଡିଆନ୍ ଏୟାର୍ ହୋଷ୍ଟେସକୁ ବଞ୍ଚେଇବା ପାଇଁ ମୁଁ ମଦ ବୋତଲ ଧରି ବୁଲିଲି । ଚାରିପାଖରେ ଭି.ଆଇ.ପି. ପାର୍ଟିର ଅନେକେ [illegible] ଜମେଇ ଛିଡ଼ା ହେଲେ । ମିସ୍ ପାର୍କର ମଧ୍ୟ ଆସିଥିଲା ।

ଉଇଗ୍ ସାହେବ ହସି ହସି ପାଞ୍ଚ-ସାତ ପେଗ୍ ପିଇଦେଲେ, କିନ୍ତୁ ଆଉ ଦୁଇ ଏକ ପେଗ୍ ପରେ ସିଗାରେଟ୍ ଜଳେଇ ପାରିଲେ ନାହିଁ । ମୁଁ ସିଗାରେଟ୍‌ଟା ଜଳେଇଦେଲି, ହେଲେ ସିଗାରେଟ୍‌ଟା ତାଙ୍କ ପାଟିରୁ ଖସିପଡ଼ିଲା । ମୁଁ ବେଶ୍ ବୁଝିପାରିଲି ଯେ ଆଉ ବେଶି ଡେରି ନାହିଁ । ଶୁଭ ଲକ୍ଷଣ ଦେଖି ମୁଁ ଦ୍ୱିଗୁଣ ଉତ୍ସାହରେ ଉଇଗ୍ ସାହେବଙ୍କୁ ବେଶ୍ ଆଦର ସତ୍କାରେ ଆପ୍ୟାୟିତ କରିବା ଆରମ୍ଭ କରି ଦେଲି, ହେଲେ

ବେଶିଦୂର ଆଗେଇପାରିଲି ନାହିଁ । ହାତର ଗ୍ଲାସ୍‌ଟିକୁ ତଳେ ରଖି ସାହେବ କହିଲେ, 'ଜର୍ଣ୍ଣାଲିଷ୍ଟ, ଇଫ୍ ୟୁ ଡୋଣ୍ଟ ମାଇଣ୍ଡ ଟିକିଏ ରେଷ୍ଟ ନିଅନ୍ତି ।'

'ସଟର୍ଣ୍ଣଲି ।'

ଉଇଗ୍ ସାହେବ୍ ଚେୟାର୍‌ରେ ଦେହଟାକୁ ରଖୁ ରଖୁ ମିଃ ସୋହନୀ ଡିକ୍ଲେୟାର୍ କରିଦେଲେ, 'ହି ଇଜ୍ ଫିନସ୍‌ଡ୍ ।'

କ୍ରମେ ଭିଡ଼ କମିବାକୁ ଲାଗିଲା । କିଛିସମୟ ମଧ୍ୟରେ ଜଣ ଜଣ କରି ବିଦାୟ ନେଲେ । ବେହେରାମାନେ ଗିଲାସ, ବୋତଲ ଟେକା ରଖା, ଧୁଆ ପୋଛା କରି ରଖି ବିଦାୟ ନେବା ପୂର୍ବରୁ ଆଉ ଦୁଇ ପେଗ୍ ସ୍କଚ୍ ମୋ ଟେବୁଲ୍‌ରେ ଥୋଇ ଦେଇଗଲେ । ବେଶ୍ କିଛିସମୟ ଅପେକ୍ଷା କରିବା ପରେ ଦେଖିଲି, ଉଇଗ୍ ସାହେବଙ୍କ ବିଶ୍ରାମପର୍ବ ପରଦିନ ସକାଳ ପୂର୍ବରୁ ଶେଷ ହେବାର ନୁହେଁ । ସେଇଥିପାଇଁ ଶେଷରେ ପୁଣି ତାଙ୍କ ଅଲକ୍ଷ୍ୟରେ ମୋ ସହିତ ମିସ୍ ପାର୍କର୍‌ର ନୂତନ ଭାବେ ପରିଚୟ ହେଲା ଏବଂ ଘନିଷ୍ଠତା ମଧ୍ୟ ହେଲା । ଏଇ ପରିଚୟ ଓ ଘନିଷ୍ଠତାର ଆନନ୍ଦରେ ବାକି ଟୁର୍‌ଟା ବେଶ୍ କଟିଲା । ଶେଷରେ ଦିନେ ସକାଳେ ସାନ୍ତାକ୍ରୁଜ୍‌ରୁ ଭି.ଆଇ.ପି.ମାନେ ଭାରତବର୍ଷକୁ ବିଦାୟ ଜଣେଇ ଚାଲିଗଲେ ୟୁରୋପ ।

ପରଦିନ ଡ୍ରନ୍ ଏକ୍ସପ୍ରେସ୍‌ରେ ପାର୍ଟିର ସମସ୍ତେ ଦିଲ୍ଲୀ ଚାଲିଗଲେ, କିନ୍ତୁ ମିସ୍ ପାର୍କର୍ ଅନୁରୋଧରେ ମୁଁ ରହିଗଲି । ଦିନବେଳେ ମୁଁ ଏବଂ ମିସ୍ ପାର୍କର୍ ମେରିନ୍ ଡ୍ରାଇଭ୍‌ରୁ ମାଲବାର୍ ହିଲ୍‌ସ ଦେଇ ଓୟାକେଶ୍ୱର ରୋଡ଼୍-ରୀଜ୍‌ରୋଡ଼୍ ବାଟେ ଘୂରି ଘୂରି ଚାଲିଯାଉ ହ୍ୟାଙ୍ଗିଙ୍ଗ୍ ଗାର୍ଡ଼େନକୁ । କେବେ ପୁଣି ଭିକ୍ଟୋରିଆ ଗାର୍ଡ଼େନକୁ । କେବେ ପୁଣି କ୍ରିଫୋର୍ଡ଼ ମାର୍କେଟ୍‌ରେ ବୁଲାବୁଲି କରୁ କରୁ ମ୍ୟାଟିନୀ ସୋ ପାଇଁ ପଶିଯାଉଁ ସିନେମା ଘରେ । ତାପରେ ସଂଧ୍ୟାବେଳେ ରାଜାଭାଇ ଟାୱାର୍ ସାମ୍ନାରେ ଆଇସ୍‌କ୍ରୀମ୍ ଖାଉ ନଖାଉଣୁ ଆସିଯାଏ କେନୀ । ତାପରେ ମେରୀନ୍ ଡ୍ରାଇଭ୍‌ର ବେଞ୍ଚରେ ବସି କଟିଯାଏ ଆମର ସଂଧ୍ୟା ଏବଂ ରାତିର ପ୍ରଥମ କେଇ ପ୍ରହର ।

ଜାଣିଚ ମେମ୍ ସାହେବ, ପାଞ୍ଚଦିନ ବମ୍ବେରେ ରହିଲି, କିନ୍ତୁ ସେଇ ପାଞ୍ଚଦିନ ଭିତରେ ହିଁ ମିସ୍ ପାର୍କର୍‌ର ପଚିଶି ବର୍ଷର ଜୀବନ କାହାଣୀ ଓ ପରିବାରର ଇତିହାସ ଜାଣିଗଲି ।

କୁଇନ୍ ଭିକ୍ଟୋରିଆ ଭାରତବର୍ଷର ଶାସନଭାର ଗ୍ରହଣ କରିବା ପରେ କଲିକତାର ଯେଉଁ ଉମେଶ ଘୋଷ କଳାପାଣି ବାଟଦେଇ ବିଲାତ ଯାଇଥିଲେ, ସେ ହଉଛନ୍ତି ଉଇଲିୟମ୍ । ଘୋଷ ହେଇ ଅଠରବର୍ଷ ପରେ ମାନ୍ଦ୍ରାଜ ଫେରିଆସିଲେ । ଯାଇଥିଲେ ଏକା, କିନ୍ତୁ ଫେରିଥିଲେ ଆହୁରି ତିନିଜଣଙ୍କୁ ସାଙ୍ଗରେ ଧରି । ସେଇ ଉଇଲିୟମ୍ ଘୋଷର ବଡ଼ଝିଅର ଏକମାତ୍ର ସନ୍ତାନ ମିସ୍ ପାର୍କର୍ । ଶରତଚନ୍ଦ୍ରଙ୍କର 'ଶ୍ରୀକାନ୍ତ' ପଢ଼ି ଶୁଣାଇ ମିସ୍ ପାର୍କର୍ ମୋତେ ଅବାକ୍ କରିଦେଇଥିଲା ଏବଂ ପ୍ରମାଣ କରିଦେଉଥିଲା ଯେ ଏଇ ବିଂଶ ଶତାବ୍ଦୀର ଆରମ୍ଭ କାଳର ଜଣେ ନିର୍ଭେଜାଲ୍ ବଙ୍ଗାଳୀର ରକ୍ତ ତା ଦେହରେ ଏବେ ବି ପ୍ରବହମାନ ।

ଉଇଲିୟମ୍ ଘୋଷଙ୍କ ଏକମାତ୍ର ପୁତ୍ର, ମିସ୍ ପାର୍କର୍‌ର ମାମୁଁ ରେଳ-ଗାର୍ଡ଼ ଥିଲେ । ଗୋଦାବରୀ ବ୍ରିଜ୍‌ରେ ମାଡ୍ରାସ୍ ମେଲ୍ ଦୁର୍ଘଟଣାରେ ସେ ମରିଯାନ୍ତି । ସେ ବିବାହ କରିନଥିବାରୁ ଉଇଲିୟମ୍ ଘୋଷଙ୍କ ବଂଶର ଏକମାତ୍ର ଚିହ୍ନକୁ ଗୋଦାବରୀର ଜଳ ଧୋଇଧାଇ ଶେଷ କରିଦେଲା । ମିସ୍ ପାର୍କର୍‌ର ଚଉଦବର୍ଷ ବୟସରେ ବାପା ମରିଯାନ୍ତି । ଝିଅକୁ ମିଶନାରୀ ସ୍କୁଲର ହଷ୍ଟେଲ୍‌ରେ ରଖେଇ ଦେଇ ମିସେସ୍ ପାର୍କର୍ ଦ୍ୱିତୀୟ ବିବାହ କରି କରାଚୀ ଚାଲିଯାଆନ୍ତି ।

ସ୍କୁଲରୁ ମାଟ୍ରିକ୍ ପାଶ୍ କରିବାର କିଛିଦିନ ପରେ ମିସ୍ ପାର୍କର ଫାର୍ ଇଷ୍ଟ ଏୟାର୍-ଓ୍ୱେଜ୍‌ର ଟ୍ରାଫିକ୍ ଆସିଷ୍ଟାଣ୍ଟ ଚାକିରି ପାଇଥିଲା । କିନ୍ତୁ ବର୍ଷ ଚାରିଟା ପରେ ସେମାନଙ୍କର ବମ୍ବେ ଅଫିସ୍ ବନ୍ଦ ହୋଇଗଲା । ଦୁଇବର୍ଷ ଧରି ଏଠିସେଠି କାମ କଲାପରେ ସେ ଓରିଏଣ୍ଟ ଏୟାରଲାଇନ୍ସର ଦିଲ୍ଲୀ ଅଫିସ୍‌ରେ ଚାକିରି ପାଇଲା ।

ଜାଣିଛ ମେମ୍‌ସାହେବ, ଦିଲ୍ଲୀର ଅଭିଜ୍ଞତାରେ ଚମକି ପଡ଼ିଥିଲା ମିସ୍ ପାର୍କର୍ । ଓରିଏଣ୍ଟରେ ପଚିଶ ତିରିଶ ଜଣ ଝିଅ ଚାକିରି କରନ୍ତି । ଅଫିସ୍‌ରେ ଅଳ୍ପ କିଛି କାମ କରି ମଧ୍ୟ ବେଶୀ ଦରମା ପାଏ ମିସ୍ ଆହୁଜା, ମିସ୍ ତାନେଜା, ମିସ୍ ଅରୋରା, ମିସ୍ ପ୍ରସାଦ, ମିସ୍ ବରୁଆ ଏବଂ ଆହୁରି ଦୁଇ ତିନିଜଣ । ବର୍ଷେ ଖଣ୍ଡେ କାମ କଲା ପରେ ମିସ୍ ପାର୍କର ଏହାର କାରଣ ଜାଣିପାରିଥିଲା । ଜାଣିପାରିଥିଲା ଯେ କମ୍ପାନୀର ମଙ୍ଗଳକାମନାରେ ଦେହକୁ ରଥୀ-ମହାରଥୀମାନଙ୍କ ସେବାରେ ନୈବେଦ୍ୟ ରୂପେ ଉତ୍ସର୍ଗ କରିଦେଲେ ଉନ୍ନତି ଲାଭଟା କିଛି ନୁହେଁ । ବୋର୍ଡ଼ ଅଫ୍ ଡାଇରେକ୍ଟରସ୍‌ର ଚେୟାର୍‌ମ୍ୟାନଙ୍କ ସେବା କରି, ରାତିରେ ସାହଚର୍ଯ୍ୟ ପ୍ରଦାନ କରି ମିସ୍ ତାନେଜା ଚାରିବର୍ଷ ଭିତରେ ଦେଢ଼ଶ ଟଙ୍କାରୁ ଉଠି ଆଠଶହରେ ପହଞ୍ଚିଛି । ଆଉ ଅରୋରା ଓ ମିସ୍ ବରୁଆ ଗେଷ୍ଟ ଫ୍ଲାଟ୍‌ରେ ଡିଉଟି କରି ବଡ଼ ବଡ଼ କମ୍ପାନୀର ଅଫିସର୍‌ମାନଙ୍କର ସମସ୍ତ କାମନାକୁ ଚରିତାର୍ଥ କରି ଶହ ଶହ ଚାଟାର୍ଡ଼ ଫ୍ଲାଇଟ୍ କରେଇ ଦେଇଛନ୍ତି ଓରିଏଣ୍ଟ ପାଇଁ । ଚାରିବର୍ଷ ଭିତରେ ଥ୍ରୀ ଫୋଲ୍ଡ୍ ରେଭିନ୍ୟୁ ବଢ଼ିଛି ଏଇ କମ୍ପାନୀର ।

ଦିଲ୍ଲୀର ପ୍ରୌଢ଼ ଓ ବୃଦ୍ଧ ଭି.ଆଇ.ପି. ମାନଙ୍କର ଲାଳସା ଓ କାମନାର ନିଆଁରେ ନିଜକୁ ପୋଡ଼ିବାକୁ ଚାହିଁନି ମିସ୍ ପାର୍କର । ସେଇଥିପାଇଁ ତ ବହୁତ ଧରାଧରି କରି ସେ ନନ୍-ସିଡ୍ୟୁଲ୍‌ଡ୍ ପାସେଞ୍ଜର୍ ସର୍ଭିସ୍‌ର ଏୟାର ହୋଷ୍ଟେସ୍ ହେଲା । ଭାବିଥିଲା, ଉଡ଼ିଉଡ଼ି ଘୂରି ବୁଲିଲେ ଆଉ ବିପଦର ଆଶଙ୍କା ରହିବ ନାହିଁ । କିନ୍ତୁ ତଥାପି ବି ଉଇଗ୍ ବା ଟ୍ରାଫିକ୍ ମ୍ୟାନେଜର୍ ତିଳକଧାରୀ ଦକ୍ଷିଣୀ ବ୍ରାହ୍ମଣ ଆୟାର୍‌ର ହାତରୁ ମିସ୍ ପାର୍କର୍ ବଞ୍ଚିପାରିନି ।

ମିସ୍ ପାର୍କର୍ ମୋତେ କହିଥିଲା, 'ଜାଣିଚ ନା ଦାଦା, ଦିନେ ଆମର ଅଫିସ୍‌ରେ ଜନନାୟକ ଗୋପାଳ ସ୍ୱାମୀକୁ ଦେଖିଥିଲି । ଚେୟାରମ୍ୟାନ୍ ସାହେବଙ୍କ ସହିତ ଏତେବଡ଼ ନେତାଙ୍କ ହାର୍ଦ୍ଦିକତା ଦେଖି ମୁଁ ନିଜ ଆଖିକୁ ବିଶ୍ୱାସ କରିପାରିନଥିଲି ।'

ଟିକିଏ ଉତ୍ତେଜିତ ହୋଇ ଆଖି ଦୁଇଟିକୁ ବଡ଼ ବଡ଼ କରି ମିସ୍ ପାର୍କର୍ ପୁଣି ଆରମ୍ଭ କରିଥିଲା, 'ଜାଣିଚ ଦାଦା, ପରେ ଦେଖିଲି ଆମର କମ୍ପାନୀ ନାଁରେ ଏୟାର୍ କଣ୍ଡିସନ୍‌ର ରିଫ୍ରିଜିରେଟର୍ କିଣା ହେଲା, କିନ୍ତୁ ସେ ସବୁ ଚାଲିଗଲା ଗୋପାଳ ସ୍ୱାମୀଙ୍କ କୋଠିକୁ। ମିଃ ଗୋପାଳସ୍ୱାମୀ ନେଇନେଲେ, କିନ୍ତୁ ପେମେଣ୍ଟ ହେଲା ଆମ ଅଫିସ୍ ତହବିଲରୁ। କେବଳ ସେତିକି ନୁହେଁ, ଏହାପରେ ଅଛନ୍ତି ଆମର ମିସ୍ ପ୍ରସାଦ–ଗୋପାଳସ୍ୱାମୀଙ୍କ ନିକଟରେ ନିତ୍ୟ ସଂଧ୍ୟାରେ ଆମ କମ୍ପାନୀର ନୈବେଦ୍ୟ !'

ଜାଣିଛ ମେମ୍ ସାହେବ, ଜୀବନରେ ଦିନେ ବି ମର୍ଯ୍ୟାଦା ବା ସ୍ନେହସୋହାଗ ପାଇନି ମିସ୍ ପାର୍କର୍। ମୋଠୁ ଯେଉଁ ଅଳ୍ପକିଛି ମର୍ଯ୍ୟାଦା ପାଇଥିଲା, ସେଥିପାଇଁ ସେ ମୋ ନିକଟରେ ସ୍ନେହର ଦାବୀ ନେଇ ସ୍ୱେଚ୍ଛାରେ ବନ୍ଦିନୀ ହେଇଯାଇଛି। କିନ୍ତୁ ଅଦୃଷ୍ଟର ଏମିତି ପରିହାସ ଯେ, ଚାକିରି ବିଭ୍ରାଟ ଆଉ କେନୀର ଆକସ୍ମିକ ଅସୁସ୍ଥତା ଯୋଗୁଁ ସେ ଦୁହିଁଙ୍କର ଏଯାଏଁ ବାହାଘର ହେଇପାରିଲା ନାହିଁ। ମନେ ମନେ ଖୁବ୍ ଦୁଃଖ ଲାଗେ। ବିଶ୍ୱସଂସାରରେ ଗୋଟିଏ ମଣିଷ ନିକଟରେ ସମ୍ପୂର୍ଣ୍ଣ ଆତ୍ମସମର୍ପଣ କରିବାର ଅଧିକାର ବି ଭଗବାନ ମିସ୍ ପାର୍କରକୁ ଦେବେ ନାହିଁ ?

—ତୁମରି ବାଚ୍ଚୁ

ମେମ୍ ସାହେବ;

ତୁମେ ତ ଜାଣିଛ, ମୁଁ ଭଗବାନଙ୍କୁ ବିଶ୍ୱାସ କରେନାହିଁ କି ଅବିଶ୍ୱାସ ବି କରେନାହିଁ। ସାରାଜୀବନ ପୁତ୍ରବଧୂମାନଙ୍କୁ ଅକଥ୍ୟ ଯନ୍ତ୍ରଣା ଦେଇ ବୃଦ୍ଧା ବିଧବା ଶାଶୂଙ୍କ ଦଳ କାଶୀଧାମରେ ବିଶ୍ୱନାଥ ଦର୍ଶନ ବା ପୁରୀରେ ଜଗନ୍ନାଥଙ୍କ ଚରଣ ତଳେ ଲୋଟିପଡ଼ିଲେ ଯେ ପାପମୁକ୍ତା ହୋଇଯିବେ, ଏକଥା ମୁଁ କେବେହେଲେ ବିଶ୍ୱାସ କରିନାହିଁ। ଆଜିବି କରୁନାହିଁ। ଯେଉଁ ବ୍ରାହ୍ମଣ ଉପଯୁକ୍ତ ପଣ (ଯୌତୁକ) ନ ପାଇଲେ ପୁତ୍ରବଧୂକୁ ଘରକୁ ପାଛୋଟି ଆଣନ୍ତି ନାହିଁ, ପ୍ରତିଦିନ ସକାଳେ ସଂଧ୍ୟାରେ ଲକ୍ଷେଥର ଗାୟତ୍ରୀ ଜପିଲେ ମଧ୍ୟ ତାଙ୍କର ମୁକ୍ତି ସମ୍ଭବ ବୋଲି ମୁଁ ଭାବୁନାହିଁ। ବିଚାର ତ୍ୟାଗ କରି ଯେଉଁମାନେ କେବଳ ଆଚାର ପାଳନ କରନ୍ତି, ଅଜ୍ଞତା ଆଉ ଅଯୁକ୍ତି ଉପରେ ଯେଉଁମାନେ ଆଦର୍ଶର ସ୍ୱର୍ଣ୍ଣମନ୍ଦିର ତୋଳନ୍ତି, ସେଠି ପୂଜାରୀ ଥାଇପାରନ୍ତି, ବିଗ୍ରହର ମୂର୍ତ୍ତି ଥାଇପାରେ —କିନ୍ତୁ ଦେବତା ରହିପାରିବେ ନାହିଁ।

ଜାଣିଛ ମେମ୍‌ସାହେବ, ଯେଉଁଠି ଦରଦ ନାହିଁ, ଯେଉଁଠି ସ୍ନେହସରାଗ ନାହିଁ, ଯେଉଁଠି କର୍ମ ସହିତ ଧର୍ମର ମେଳ ନାହିଁ— ସେଠି ପ୍ରକୃତପକ୍ଷେ କଲ୍ୟାଣ ହେବା କେବେ ବି ସମ୍ଭବ ନୁହେଁ। କିନ୍ତୁ ଦୁଃଖର କଥା କ'ଣ ଜାଣିଚ, ଭାରତବର୍ଷର ଚାରିଆଡ଼େ ବହୁ ଲୋକ ଧର୍ମର ମିଛ (ଝୁଟା) ନାମାବଳୀ ଦେହରେ ପକେଇ ଅନ୍ୟାୟ ଅବିଚାରକୁ ଢାଙ୍କି ରଖୁଛନ୍ତି ଏବଂ ସସମ୍ମାନେ ଅଦୃଷ୍ଟର ବୈତରଣୀ ପାରିହୋଇ ସତ୍ୟକୁ ଓ ପ୍ରେମକୁ

ଉପହାସ କରୁଛନ୍ତି । ଦେଖିଲେ ଦୁଃଖ ଲାଗେ ଯେ ସ୍ୱୟଂ ଭଗବାନ ବୁଦ୍ଧଦେବଙ୍କ ଜୀବନକାଳରେ ତ୍ୟାଗର କଥା, ସେବାର କଥା ଯେତେ ବେଶି ପ୍ରଚାର ହୋଇଛି, ଆଜିକାଲି ତା'ଠୁ ବେଶୀ ପ୍ରଚାର ହେଉଛି । ଅଥଚ ଯେଉଁମାନେ ସେଇ ତ୍ୟାଗର ପତାକା ଟେକି ଧରିଛନ୍ତି, ସେଇମାନେ ହିଁ ଆକଣ୍ଠ କ୍ଷମତା ସୁରା ପାନ କରି ଆସକ୍ତିରେ ଭରିଯାଇଛନ୍ତି ।

ତୁମକୁ ବିଦାୟ ଦେଇସାରି ସପ୍ତାହେ ତଳେ ଦିଲ୍ଲୀକୁ ଫେରିଆସି ଭାବୁଥିଲି ଯେ ଯା'ପରେ ବମ୍ବେ ଯିବି ତୁମକୁ ଅଭ୍ୟର୍ଥନା ଜଣାଇବାକୁ -- ଭାବୁଥିଲି ଯେ ବମ୍ବେରୁ ଫେରିବା ବେଳେ ଫ୍ରଣ୍ଟିୟର୍ ମେଲ୍‌ର ଝରକା କଡ଼ରେ ବସି ତୁମକୁ ପ୍ରାଣଭରି ଦେଖିବି— ଅନ୍ତର ଭରି ନିବିଡ଼ଭାବେ ତୁମକୁ ମୋ ଭିତରେ ପାଇବି । କିନ୍ତୁ ଅଦୃଷ୍ଟର ଏମିତି ପରିହାସ ଯେ ଏଡିଟର୍‌ଙ୍କ ଟ୍ରଙ୍କକଲ୍ ପାଇ କଂଗ୍ରେସ ସେସନ୍ କଭର୍ କରିବା ସକାଶେ ପୁଣି ଦୌଡ଼ିବାକୁ ପଡ଼ିଲା ଏଇ ବମ୍ବେକୁ । ଯେଉଁ ବମ୍ବେକୁ ଯାଇ ଚିରପରିଚିତା ତୁମକୁ ପାଇବି ବୋଲି ଭାବିଥିଲି, ସେଇ ବମ୍ବେରେ ଅପରିଚିତଙ୍କ ଅରଣ୍ୟରେ କେତେଦିନ କଟେଇବାକୁ ପଡ଼ିଲା ତୁମର ବାଚ୍ଚୁକୁ ।

ଡୁପ୍ଲିକେଟ୍ ଫ୍ରଣ୍ଟିୟର୍ ମେଲ୍‌ରୁ ବମ୍ବେ ସେଣ୍ଟ୍ରାଲ୍ ଷ୍ଟେସନ୍‌ରେ ଓହ୍ଲେଇ ଦେଖିଲି ଏକ ବିରାଟ ଜନତା । ଆମ ଟ୍ରେନ୍‌ରେ ଯେତେସବୁ ଭି.ଆଇ.ପି. ଆସିଲେ ସେ ସମସ୍ତଙ୍କର ଅଭ୍ୟର୍ଥନା ହେଲା ମହାସମାରୋହରେ । ସାଧାରଣତଃ ଜଣେ ଭି.ଆଇ.ପି. ଆସିଲେ ବି ସହରରେ ହଇଚଇ ପଡ଼ିଯାଏ — କଂଗ୍ରେସ୍ ସେସନ୍‌ସରେ ତ ଦଳ ଦଳ ଭି.ଆଇ.ପି. । ସୁତରାଂ ବମ୍ବେ-ସେଣ୍ଟ୍ରାଲ୍, ଭିକ୍ଟୋରିଆ-ଟର୍ମିନସ୍ ବା ସାନ୍ତାକ୍ରୁଜ୍‌ରେ ଅଭ୍ୟର୍ଥନାକାମୀ ଜନତାଙ୍କ ଭିଡ଼ ଯେ ହବ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛିନାହିଁ । କେବଳ କଂଗ୍ରେସ ଅଧିବେଶନ ଉପଲକ୍ଷେ ନୁହେଁ, ଭି.ଆଇ.ପି.ଙ୍କ ଆଗମନ-ନିର୍ଗମନ, ଆର୍ବିଭାବ- ତିରୋଭାବ ସମୟରେ ଆମ ଦେଶରେ ଯେଉଁ ଦୃଶ୍ୟ ଦେଖାଯାଏ, ତାହା ଅଭୂତପୂର୍ବ ।

କଲିକତାରେ ନିଶ୍ଚୟ ଦେଖିଥିବ, ଭି.ଆଇ.ପି.ଙ୍କ ଯିବାଆସିବା ସମୟରେ କେମିତି ତୁମୁଳ କାଣ୍ଡକାରଖାନା ହୁଏ । ସଂଧ୍ୟା ପାଞ୍ଚଟାରେ ଯେଉଁ ଭି.ଆଇ.ପି. ଦମ୍‌ଦମ୍‌ରେ ଲ୍ୟାଣ୍ଡ କରିବେ, ତାଙ୍କ ପାଇଁ ଦିପହର ଦୁଇଟା ଅଢ଼େଇଟାରୁ ଶ୍ୟାମବଜାରର ପଞ୍ଚମୁଖୀ ଛକ ବା ସେଣ୍ଟ୍ରାଲ୍ ଏଭିନ୍ୟୁ ଦେଇ କୌଣସି ଗାଡ଼ିଘୋଡ଼ା ଅଥବା ଜନସାଧାରଣଙ୍କ ଯାତାୟାତ ବନ୍ଦ କରିଦିଆଯାଇଥାଏ । କଣ ସେତିକି ? ପୋଲିସ୍‌ଙ୍କ ଗାଡ଼ିଗୁଡ଼ିକ ଏମିତି ଭାବରେ ଛୁଟୁଥିବ ଯେ ଦେଖିଲେ ମନେହେବ ସତେକି ଯୁଦ୍ଧ ଲାଗିଛି । ବିନା ପରମିଟ୍‌ରେ ଦମ୍‌ଦମ୍ ଏୟାରପୋର୍ଟର ତ୍ରିସୀମା ଭିତରକୁ ପଶିବାକୁ ଦିଆଯାଏନା କାହାରିକୁ । ଅନ୍ୟ ପ୍ଲେନ୍‌ର ନାରୀ-ପୁରୁଷ, ଶିଶୁ-ବୃଦ୍ଧ ପ୍ୟାସେଞ୍ଜର୍‌ମାନଙ୍କୁ ଗ୍ରୀଷ୍ମ ବର୍ଷା ସହ୍ୟ କରି

ଦୀର୍ଘପଥ ପାଦରେ ଚାଲିଥିଲି ଅତିକ୍ରମ କରି ପ୍ଳେନ୍‌ରେ ଚଢ଼ିବାକୁ ପଡ଼ିଥାଏ । ଜାଣିଛ ମେମ୍ ସାହେବ୍, ଅନେକ ସମୟରେ ଏହିସବୁ କାର୍ଯ୍ୟାନୁଷ୍ଠାନର ରିହିୟରସାଲ୍ ମଧ୍ୟ କରାଯାଇଥାଏ । ଜଣେ ସବ୍-ଇନ୍‌ସପେକ୍ଟରଙ୍କୁ ଗଳାବନ୍ଦ କୋଟ୍ ପିନ୍ଧେଇ ଭି.ଆଇ.ପି. ଭାବରେ ତାଙ୍କୁ ଦମ୍‌ଦମ୍‌ରେ ଅଭ୍ୟର୍ଥନା ଜଣାଇ ରାଜଭବନର ଫାଟକଯାଏ ନିଆଯାଇଥାଏ । ଅନ୍ତତଃ କେତେ ଲକ୍ଷ ଲୋକଙ୍କ ପାଇଁ ଅସୁବିଧା ସୃଷ୍ଟି ନକରି ଆମ ଦେଶରେ ଭି.ଆଇ.ପି.ଙ୍କ ଆସିବା ଯିବା ସମ୍ଭବ ନୁହେଁ ।

ଥରେ ଭାବି ଦେଖ ତ, କେତେ ଲକ୍ଷ ଲୋକଙ୍କର ଘଣ୍ଟେ ଦୁଇଘଣ୍ଟା ଲେଖାଏଁ କାର୍ଯ୍ୟରେ କ୍ଷତି ହେଲେ ମୋଟ୍‌ରେ କେତେଲକ୍ଷ ମ୍ୟାନ୍-ପାୱାର୍ ନଷ୍ଟ ହୁଏ ! ଭାବି ଦେଖ ତ, ସାରା ଦେଶରେ ଭି.ଆଇ.ପି.ଙ୍କ ଆସିବା ଯିବା, ଆଦର-ଅଭ୍ୟର୍ଥନା ଓ ତତ୍ତ୍ୱାବଧାନ ସକାଶେ ଲକ୍ଷ ଲକ୍ଷ ପୋଲିସ୍ ଓ ସରକାରୀ କର୍ମଚାରୀଙ୍କର କେତେ କୋଟି ଘଣ୍ଟାର ସମୟ ନଷ୍ଟ ହୁଏ ! ଭି.ଆଇ.ପି.ଙ୍କ ସକାଶେ ଏତେ ସମୟ ନଷ୍ଟ କଲେ ପୋଲିସ୍ କେତେବେଳେ ଚୋର-ଡକାୟତଙ୍କୁ ଧରିବେ ? ସରକାରୀ କର୍ମଚାରୀ ଦଳ କିପରି ଭାବେ ଦେଶର ଶାସନ ବ୍ୟବସ୍ଥାକୁ ଅତୁଟ ରଖିପାରିବେ ?

ଯେଉଁମାନେ ଏସବୁ ଦେଖି ଦେଖି ଅଭ୍ୟସ୍ତ, ଅନ୍ୟ ଦେଶର କାହାଣୀ ଶୁଣିଲେ ସ୍ତମ୍ଭିତ ହୋଇଯିବେ । ମୋର ବନ୍ଧୁ ଡାଃ ବୋଷ କଲମ୍ବୋ ପ୍ଳାନ୍‌ରେ ଫେଲୋସିପ୍ ପାଇ ରିସର୍ଚ୍ଚ କରିବା ସକାଶେ ଅଷ୍ଟ୍ରେଲିଆ ଯାଇଥିଲେ । ସିଡ୍‌ନୀରୁ ଡାରଉଇନ୍ ଯିବା ସମୟରେ ବୋଷଙ୍କ ପାଖରେ ଜଣେ ବୃଦ୍ଧ ଅଷ୍ଟ୍ରେଲୀୟ ଥିଲେ । ଘଣ୍ଟାଏ ଖଣ୍ଡେ ପାଖାପାଖି ବସି ରହିବା ପରେ ଦୁଇଜଣଙ୍କ ଭିତରେ ଆଳାପ ଆରମ୍ଭ ହେଲା । ବୋଷ୍ ରିସର୍ଚ୍ଚ କରିବା ସକାଶେ ଅଷ୍ଟ୍ରେଲିଆ ଆସିଛନ୍ତି ଜାଣି ବୃଦ୍ଧ ଖୁସି ହେଲେ । ଭାରତବର୍ଷକୁ ନେଇ ଦୁହିଁଙ୍କ ମଧ୍ୟରେ ବହୁତ ଆଲୋଚନା ହେଲା । ଆମ ଦେଶର ନାନା ସମସ୍ୟା ଓ ପରିକଳ୍ପନା ସମ୍ପର୍କରେ ବୃଦ୍ଧ ଅଷ୍ଟ୍ରେଲିଆନ୍ ଭଦ୍ରଲୋକଙ୍କ ଗଭୀର ଜ୍ଞାନ ଦେଖି ବୋଷ ବିସ୍ମିତ ହୋଇଥିଲେ ।

ଡାରଉଇନ୍‌ରେ ଯେତେବେଳେ ପ୍ଳେନ୍ ଓହ୍ଲେଇଲା, ସେତେବେଳେ ମୂଷଳଧାରାରେ ବର୍ଷା ପଡୁଥାଏ । ପ୍ଳେନ୍‌ରୁ ଓହ୍ଲେଇବା ପୂର୍ବରୁ ବୃଦ୍ଧ ଜଣକ ବୋଷକୁ କହିଥିଲେ, "କଲେଜରୁ ତୁମର ଗାଡ଼ି ନଆସିଲେ ତୁମେ ମୋ ସାଥିରେ ଯାଇପାର । ମୁଁ ତୁମ ପାଇଁ ଅପେକ୍ଷା କରିବି । କଙ୍ଗାରୁ ମାର୍କା ବ୍ୟାଜ୍ ପିନ୍ଧା ଜଣେ ଡ୍ରାଇଭର୍ ମୋ ଗାଡ଼ି ସାମନାରେ ଠିଆ ହୋଇଥିବ ।" ଯାହାହେଉ, ବର୍ଷାରେ ଅନ୍ୟାନ୍ୟ ପାସେଞ୍ଜରମାନଙ୍କ ପରି ବୃଦ୍ଧ ମଧ୍ୟ ଦୌଡ଼ି ଦୌଡ଼ି ଟର୍ମିନାଲ୍ ବିଲ୍‌ଡିଂକୁ ଗଲେ । ବୋଷ ମଧ୍ୟ ଗଲେ ।

କଲେଜରୁ ବୋଷ ପାଇଁ ଗାଡ଼ି ଆସିଥିଲା । ସେଇ ଖବରଟା ବୃଦ୍ଧଙ୍କୁ ଜଣାଇବାରୁ ସଂଧ୍ୟାର ଚା'ପାନ ସକାଶେ ନିମନ୍ତ୍ରଣ ପାଇଥିଲେ ବୋଷ । ବୃଦ୍ଧଙ୍କ ଠିକଣା ଜାଣିଲେ

ମଧ୍ୟ ତାଙ୍କର ପରିଚୟ ପଚାରିବାକୁ ବୋଷ୍ ଲଜ୍ଜାବୋଧ କରିଥିଲେ । ଶେଷରେ ବୃଦ୍ଧଙ୍କ ଡ୍ରାଇଭରକୁ ପାଖକୁ ଡାକି ଫୁସ୍‌ଫୁସ୍‌କିନା ପଚାରିଥିଲେ, 'ହୁ ଇଜ୍ ହି ?'

ଡାଃ ବୋଷ ଶୁଣି ଚମକି ପଡ଼ିଥିଲେ ଯେ ସେଇ ବୃଦ୍ଧଜଣକ ହେଉଛନ୍ତି ଅଷ୍ଟ୍ରେଲିଆର ଆକ୍ଟିଂ ପ୍ରାଇମ୍‌ମିନିଷ୍ଟର ! ପ୍ରାଇମ୍ ମିନିଷ୍ଟର୍ ସାର୍ ରବର୍ଟ ମେଞ୍ଜିସ୍ କମନ୍ ୱେଲ୍‌ଥ ପ୍ରାଇମ୍ ମିନିଷ୍ଟର୍ସ କନ୍‌ଫରେନ୍ସ ସକାଶେ ଲଣ୍ଡନ ଯାଉଛନ୍ତି ଏବଂ ଫାଇନାନ୍ସ ମିନିଷ୍ଟର୍ ଅସ୍ଥାୟୀ ଭାବରେ ପ୍ରଧାନମନ୍ତ୍ରୀଙ୍କ ଦାୟିତ୍ୱଭାର ଗ୍ରହଣ କରିଥିଲେ । ଆକ୍ଟିଂ ପ୍ରାଇମ୍ ମିନିଷ୍ଟରଙ୍କୁ ଅଭ୍ୟର୍ଥନା ଜଣାଇବା ସକାଶେ ସରକାରୀ ଗାଡ଼ିର ଜଣେ ଡ୍ରାଇଭର୍ ଛଡ଼ା ଡାରଉଇନ୍ ଏୟାରପୋର୍ଟରେ ଆଉ କେହି ଉପସ୍ଥିତ ନଥିଲେ । କୌଣସି ପାସେଞ୍ଜର୍ ଅଟୋଗ୍ରାଫ୍ ନେବାପାଇଁ ତାଙ୍କୁ ଘେରିଯାଇନଥିଲେ, ବଡ଼ବଜାର ବ୍ରିଗେଡ଼ ପରିକା ଦଳେ ବ୍ୟବସାୟୀ ଫୁଲମାଳ ଧରି ମଧ୍ୟ ଠିଆହୋଇ ନଥିଲେ । ସ୍କୁଲ କଲେଜର ଝିଅମାନେ କ୍ଲାସ୍ କମେଇକରି ଶଙ୍ଖଧ୍ୱନି କରିବା ସକାଶେ କିମ୍ବା ପୁଅଦଳ ବ୍ୟାଣ୍ଡପାର୍ଟି ନେଇ ଉପସ୍ଥିତ ନଥିଲେ । କେବଳ ସେତିକି ନୁହେଁ, ପୋଲିସ୍ ଏବଂ ସରକାରୀ କର୍ମଚାରୀ ଦଳ କାମଧାମ ଛାଡ଼ି ଏୟାରପୋର୍ଟକୁ ଯାଇନାହାନ୍ତି । ଆକ୍ଟିଂ ପ୍ରାଇମ୍ ମିନିଷ୍ଟରଙ୍କ ଆଗମନ ହେତୁ ଜଣେହେଲେ ବି ଲୋକର ଗୋଟିଏ ମିନିଟ୍ ମଧ୍ୟ ନଷ୍ଟ ହୋଇନାହିଁ କି କିଛିହେଲେ ଅସୁବିଧା ହେଲାନାହିଁ । ସେମାନେ କାମ କରନ୍ତି । ଆମେ କାମର ବାହାନା କରୁ ।

ଆମ ଦେଶରେ ପ୍ରାଇମ୍ ମିନିଷ୍ଟର୍ ବିଦେଶକୁ ଗଲେ ମଧ୍ୟ କେହି ଆକ୍ଟିଂ ପ୍ରାଇମ୍ ମିନିଷ୍ଟର ହୁଅନ୍ତି ନାହିଁ । କିନ୍ତୁ ତଥାପି ଥରେ କଳ୍ପନା କର, ନେହେରୁ ବିଦେଶରେ ଏବଂ ସର୍ଦ୍ଦାର୍ ପଟେଲ ବା ମୌଲାନା ଆଜାଦ୍ ପ୍ରଧାନମନ୍ତ୍ରୀଙ୍କ ଦପ୍ତର ଦେଖୁଛନ୍ତି ଓ ସେଣ୍ଟ୍ରାଲ୍ କ୍ୟାବିନେଟ୍ ମିଟିଙ୍ଗରେ ପ୍ରିଜାଇଡ୍ କରୁଛନ୍ତି । ଥରେ ସ୍ୱପ୍ନରେ ବି ଭାବିପାର ଏପରି ସମୟରେ ସର୍ଦ୍ଦାର ପଟେଲ୍ କଲିକତାକୁ ଆସିଛନ୍ତି ଏବଂ ପୋଲିସ୍ ଓ ସରକାରୀ କର୍ମଚାରୀ ଦଳ ନିଜ ନିଜର କାମକାର୍ଯ୍ୟରେ ବ୍ୟସ୍ତ ? ମିନିଷ୍ଟର୍ ଦଳ ରାଇଟର୍ସ ବିଲ୍‌ଡିଂରେ ମୁଣ୍ଡ ତଳକୁ କରି ଫାଇଲ୍ ଦୁଙ୍କୁଛନ୍ତି-ନୋଟ୍ ଲେଖୁଛନ୍ତି ? ଭାବି ପାରୁଛ, ସୁବିଧାବାଦୀ ଦଳ ଫୁଲମାଳ ହାତରେ ଧରି ଦମ୍ ଦମ୍‌ରେ ହାଜର୍ ହୋଇନାହାନ୍ତି, ଶ୍ୟାମବଜାର ଛକରେ ଯଥାରୀତି ଟ୍ରାମ୍ ବସ୍ ଚାଲୁଛି ଏବଂ ସମସ୍ତଙ୍କ ଅଲକ୍ଷ୍ୟରେ ଗଭର୍ଣ୍ଣମେଣ୍ଟ ହାଉସ୍‌ର ଜଣେ ଡ୍ରାଇଭର୍ ତାଙ୍କୁ ନେଇ ଦମ୍‌ଦମ୍‌ରୁ ରାଜଭବନକୁ ଆଣିଆସିଛି ?

ପୃଥିବୀର ଅନ୍ୟତମ ଉନ୍ନତ ଦେଶ, ସ୍କାଣ୍ଡିନେଭିଆନ୍ ୟୁରୋପର ଚୂଡ଼ାମଣି ସୁଇଡେନ୍‌ର ପ୍ରାଇମ୍ ମିନିଷ୍ଟର ମିଃ ଆର୍‌ଲ୍ୟାଣ୍ଡରଙ୍କ ସହିତ ସାକ୍ଷାତକାର ପାଇଁ ଯାଇଥିଲେ ବିଶ୍ୱ ବିଖ୍ୟାତ ଆମେରିକାନ୍ ସାମ୍ବାଦିକ ମିଃ ଜନ୍ ଗାନ୍ଥାର୍ । ଘରର ସାମ୍ନା

ପଟର ଏକ ଛୋଟ କୋଠରୀରେ ଫାଇଲପତ୍ରକୁ ଆଡ଼େଇଦେଇ ଯିଏ ଗାନ୍ଧୀରଙ୍କୁ ଅଭ୍ୟର୍ଥନା ଜଣାଇଲେ, ସେହିଁ ହେଉଛନ୍ତି ପ୍ରାଇମ୍‌ମିନିଷ୍ଟାର୍ ଆର୍‌ଲ୍ୟାଣ୍ଡର୍ । ସିକ୍ୟୁରିଟି ପୋଲିସ୍, ପ୍ରାଇଭେଟ୍ ସେକ୍ରେଟାରୀ, ପର୍ଶନାଲ ଆସିଷ୍ଟାଣ୍ଟମାନଙ୍କ ଦୁରୂହ ଦୁର୍ଗ ଅତିକ୍ରମ କରିବା ତ ଦୂରର କଥା, ସୁଇଡ଼ିସ୍ ପ୍ରାଇମ୍ ମିନିଷ୍ଟରଙ୍କ ସଙ୍ଗେ ସାକ୍ଷାତ୍ ହେବା ପୂର୍ବରୁ ଜଣେହେଲେ ବେହେରା - ଚପରାସୀ ବା ଚାକରର ଦେଖା ପାଆନ୍ତି ନାହିଁ ଗାନ୍ଧୀର୍ । ଆଉ ଆମ ଦେଶରେ ?

ଏଇ ତ ବମ୍ବେ - କଂଗ୍ରେସରେ ବହୁତ ଲିଡରଙ୍କୁ ଭିନ୍ନ ଭିନ୍ନ ମନ୍ତ୍ରପାଠ କରିବା ଦେଖିଲି । ଶ୍ରେଣୀ ବିଭାଗକୁ ଭାଙ୍ଗି ସାଧାରଣ କଂଗ୍ରେସ ସେବକଙ୍କ ଠାରୁ ବହୁ ଦୂରରେ ବିଖ୍ୟାତ ହୋଟେଲଗୁଡ଼ିକରେ ଶୀତତାପ ନିୟନ୍ତ୍ରିତ କୋଠରୀଗୁଡ଼ିକର ଆଇଭରୀ-ଟାୱାରରେ ରଖିଥିଲେ କଂଗ୍ରେସୀ-ଭି.ଆଇ.ପି.ମାନଙ୍କୁ । ଏ.ଆଇ.ସି.ସି.ରେ ଚା'ର ଆସର ପାଇଁ ମଧ୍ୟ ବହୁ ଯତ୍ନରେ ଦୁଇଟି ପୃଥକ୍ ବ୍ୟବସ୍ଥା କରାଯାଇଥିଲା । ଯେତେବେଳେ କଂଗ୍ରେସରେ ସୋସ୍ୟାଲିଜିମ୍‌ର ସ୍ଲୋଗାନ ନଥିଲା, ସେତେବେଳେ ପେଣ୍ଡାଲ ଉପରେ ସତରଞ୍ଜି ବିଛେଇ ସବୁ କଂଗ୍ରେସୀ ଏକ ସାଥିରେ ବସିବାକୁ ଦ୍ୱିଧା କରିବା ଦୂରେଥାଉ, ଖୁବ୍ ଆନନ୍ଦ ପାଉଥିଲେ । ଆଉ ଆଜି ?

ଜାଣିଛ ମେମ୍ ସାହେବ୍, ଏହିସବୁ ଦେଖି ଶୁଣି ମନେ ମନେ ଭୟ ଲାଗୁଛି ଯେ ଏମାନେ ମନ୍ଦିର ଗଢ଼ିବେ, ପୂଜାରୀ ନିଯୋଗ କରିବେ, ବିଗ୍ରହ ପ୍ରତିଷ୍ଠା କରିବେ— କିନ୍ତୁ ଭଗବାନଙ୍କୁ ଆଣିପାରିବେ ନାହିଁ । ଏମାନେ କାଳକାରଖାନା ଗଢ଼ିବେ, ସ୍କୁଲ-କଲେଜ ପ୍ରତିଷ୍ଠା କରିବେ, ରାସ୍ତାଘାଟ ତିଆରି କରିବେ— କିନ୍ତୁ ହୁଏତ ଦରଦ ଅଭାବରୁ ମର୍ଯ୍ୟାଦା ଦେବାର କାର୍ପଣ୍ୟ ଯୋଗୁ ମଣିଷଙ୍କ ସହିତ ମଣିଷ ଭଳି ମିଶିବାରେ ସଙ୍କୋଚ ଯୋଗୁ ଏମାନଙ୍କ ହାତରେ ମଣିଷ ଗଢ଼ି ହେବେନାହିଁ । କର୍ମ ସହିତ ଆଦର୍ଶର ସଙ୍ଗତି ଯୋଗୁଁ ଯେଉଁ ଅତୀତ ଦିନମାନଙ୍କରେ ଭାରତବର୍ଷ ସଭ୍ୟତାର ଅଗ୍ରଦୂତ ହୋଇଥିଲା, ତାହା କଣ ଆଉ କେବେ ବି ଫେରିଆସିବ ନାହିଁ ? ନିଶ୍ଚୟ ଆସିବ ।

— ତୁମରି ବାଚ୍ଚୁ

ମେମ୍ ସାହେବ;

ଦୁଃସ୍ୱପ୍ନ ଭଳି ଭାରତବର୍ଷର ଇତିହାସର ମୋଡ଼ ଘୂରିବା ଦେଖିଲି । ସେଇଥିପାଇଁ ଏଇ ଘଟଣା ପ୍ରବାହ ଭିତରେ ତୁମକୁ ସ୍ମରଣ କରିବାର ଅବକାଶ ପାଇନାହିଁ । ନିଜକୁ ବି ଭୁଲିଯାଇଥିଲି । କିନ୍ତୁ ଆଜି କ୍ଳାନ୍ତି ଅନୁଭବ କରୁଛି । ଯେତେବେଳେ ଚାରିଆଡ଼ର ଉତ୍ତେଜନା ଅନେକଟା ଥମିଯାଇଛି, ସେତେବେଳେ ତୁମ ଛଡ଼ା ଆଉ କାହାକୁ ମନେ କରିପାରୁନାହିଁ । ହଠାତ୍ ଯେମିତି ନିଜକୁ ଭୀଷଣ ଦୁର୍ବଳ, ଭୀଷଣ ଅସହାୟ ମନେକରୁଛି । ଏଇ ଦୁର୍ବଳତା ଏଇ ଅସହାୟତାରୁ ତୁମ ବ୍ୟତୀତ କିଏ ମୁକ୍ତି ଦେଇପାରିବ

କୁହ ତ ? ସେଥିପାଇଁ ତ ପ୍ରାଣ ଚାହୁଁଛି ଛୁଟି ଚାଲିଯାନ୍ତି ତୁମରି ପାଖକୁ, ମନ ହେଉଛି ଦୌଡ଼ିଯାଇ ଚଢ଼ିଯାଆନ୍ତି ଗୋଟେ ବୋଇଙ୍ଗ୍‌ରେ; ତାପରେ ଲଣ୍ଡନ୍ ଏୟାର୍‌ପୋର୍ଟର ନର୍ଥ-ସାଉଥ୍‌ରେ ଯେତେବେଳେ ପ୍ଲେନ୍‌ଟା ରହିବ, ସେତେବେଳେ ସିଡ଼ିରେ ନ ଓହ୍ଲେଇ ଡିଆଁମାରି ତୁମକୁ ଧରିପକାନ୍ତି । ଇଚ୍ଛା ହେଉଛି, ତୁମକୁ ନେଇ ପିକାଡେଲି ସର୍କସ୍ କଡ଼ରେ ଘୁରିବୁଲନ୍ତି, କେନ୍‌ସିଙ୍ଗ୍‌ଟନ୍ ଗାର୍ଡେ଼ନ୍ ପାଖକୁ ନେଇ ସାରା ସଂଧ୍ୟାଟା କଟେଇ ଦିଅନ୍ତି, ଅକାରଣରେ, ଅହେତୁକ ଭାବେ ଟିଉବ୍‌ରେ ବସି ଘୂରିଥାନ୍ତି ଏବଂ ତାପରେ ଘରକୁ ଫେରି ତୁମରି ମୁହଁରେ ତୁମରି ଆଖିରେ ମୋ ପ୍ରାଣର ଛବିକୁ ଦେଖି ଦେଖି ସମୟ କଟାନ୍ତି ।

ମନ ମିଜାଜ୍ ଭଲ ନାହିଁ, ତଥାପି ଘୂରୁଛି, ବୁଲୁଛି, କାମଧାମ ବି କରୁଛି । ଯା ଭିତରେ ଆଉ ଏକ କାରଣ ଯୋଗୁ ମନଟା ଆହୁରି ଖରାପ ହେଇଯାଇଛି ।

ବେଶ୍ କିଛିବର୍ଷ ତଳର କଥା । ସେତେବେଳଯାଏ ତୁମେ ମୋ ଜୀବନରେ ଆସିନଥାଅ, ମୁଁ ସେତେବେଳେ ସ୍ୱାଧୀନ ଥିଲି । ଦାର୍ଜିଲିଂରେ ଏକ ଚ୍ୟାରିଟି ସୋରେ ତନ୍ଦ୍ରା ସାନ୍ୟାଲ୍ ସଙ୍ଗେ ମୋର ପରିଚୟ ହୁଏ । ପ୍ରଥମ ଦର୍ଶନରେ ହିଁ ମନକୁ ଦୋଳାୟିତ କରିଦେବା ଭଳି ଅଫୁରନ୍ତ ସଂପଦ ଥିଲା ତନ୍ଦ୍ରାର । ମନଟା ଯେ ମୋର ଦୋଳାୟିତ ହୋଇନଥିଲା, ଏକଥା କହିଲେ ତୁମ ପାଖରେ ମିଛ କହିବା ହେବ । ଚ୍ୟାରିଟି ପ୍ରୋଗ୍ରାମ୍ କରିବା ସକାଶେ ତନ୍ଦ୍ରା ଦଳେ କଲେଜଝିଅଙ୍କ ସହିତ ଦାର୍ଜିଲିଂ ଯାଇ ସେଥର ବେଶ୍ ଜମେଇଥିଲା । ଅନେକଙ୍କ ଭଳି ମୁଁ ବି ସେମାନଙ୍କର ପୃଷ୍ଠପୋଷକ ହୋଇଗଲି । ପରେ ଦିନେ ବଟାନିକାଲ ଗାର୍ଡେ଼ନ୍‌ରେ ବୁଲୁ ବୁଲୁ ଦେଖିଲି ତନ୍ଦ୍ରା ଆସିଛି । ତନ୍ଦ୍ରା ସେଦିନ କ'ଣ ପାଇଁ ମୋ ହାତ ଧରି ଜବରଦସ୍ତ ଟାଣି ନେଇଗଲା, ତାହା ମୁଁ ଆଜିଯାଏଁ ଜାଣିପାରିଲି ନାହିଁ । ବେଶି କିଛି କଥାବାର୍ତ୍ତା ଯେ କରିଥିଲା ତା ବି ନୁହଁ । ତେବେ ମୋର ହାତଟାକୁ ତା ନିଜର ହାତରେ ଚାପିଧରି ବେଶ୍ କିଛିସମୟ ଦୌଡ଼ାଦୌଡ଼ି କରିଥିଲା । କେବଳ ଏତିକି ମନେଅଛି, ବିଦାୟ ନେଲାବେଳେ ମୋତେ କହିଥିଲା, 'ଏମିତି ଅନେଇବେ ନାହିଁ ମ । ୟୁ ଅଣ୍ଡର୍‌ଷ୍ଟାଣ୍ଡ, ହ୍ୱାଟ୍ ଆଇ ମିନ୍ ?'

କଲିକତା ଛାଡ଼ି ଦାର୍ଜିଲିଂର ଉଚ୍ଚ ପାହାଡ଼ ଉପରେ ଉଡ଼ିଲାବେଳେ ମନଟା କଣ କେମିତି ହେଇଯାଏ । ପୁଣି ଯେତେବେଳେ ଦାର୍ଜିଲିଂ ପ୍ଲେନ୍‌ରେ ଓହ୍ଲେଇ ଆସେ ସବୁ ଠିକ୍ ହେଇଯାଏ । କଲିକତାକୁ ଫେରିଆସି ତନ୍ଦ୍ରା ପାଇଁ ମୋର ମାନସିକ ତନ୍ଦ୍ରା ଭାବ କଟିଯାଇଥିଲା । ବେଶ୍ କିଛିଦିନ ପରେ ରୟାଲ୍ ହର୍ଟିକଲ୍‌ଚରାଲ୍ ଗାର୍ଡେ଼ନ୍ ୟାନୁଆଲ୍-ସୋ'ରେ ଜଣେ ଏୟାର୍‌ଫୋର୍ସ ଅଫିସରଙ୍କ ସାଥିରେ ତନ୍ଦ୍ରାକୁ ଦେଖିଥିଲି । ମୁଁ ଦେଖି ନ ଦେଖିଲା ପରି ଆଡ଼େଇହେଇ ଚାଲିଯାଉଥିଲା ବେଳେ ବାଧା ପାଇଲି । ହଠାତ୍ ମୋ ହାତଟାକୁ ଟାଣିଧରି କହିଲା, 'ଦାର୍ଜିଲିଂର ସେଇ ଆନନ୍ଦମୟ ଦିନଗୁଡ଼ିକର ଅନୁଭୂତି ପରେ ବି ମୋତେ ଚିହ୍ନି ପାରୁନ ? କ'ଣ ହେଇଛି ? ଆଇ ସପୋଜ୍ ଇଉ ହ୍ୟାଭ୍‌ନଟ୍ ଲଷ୍ଟ ଇୟୋର୍ ମେମୋରି, ବାବୁ ?'

ମୁଁ କୌଣସିମତେ ସିଚୁଏସନ୍‌ଟାକୁ ସମ୍ଭାଳି ନେବାରୁ ତନ୍ଦ୍ରା ଆଳାପ କରେଇ ଦେଲା, 'ମିଟ୍ ମାଇଁ ଫ୍ରେଣ୍ଡ ସ୍କାଡ୍ରନ୍ ଲିଡ଼ର୍ ଇନ୍ଦ୍ରଜିତ୍ ।'

ପରେ ଶୁଣିଥିଲି ତନ୍ଦ୍ରା ସାନ୍ୟାଲ୍ ମିସେସ୍ ଇନ୍ଦ୍ରଜିତ୍ ହୋଇ ବାଙ୍ଗାଲୋର୍‌ରେ ଅଛି । ଥରେ ପୁନାରେ ସେମାନଙ୍କ ସହିତ ମୋର ସାକ୍ଷାତ୍ ହେଇଥିଲା । ତାର କିଛିଦିନ ପରେ ହିଁ ଏକ ଆକସ୍ମିକ ଦୁର୍ଘଟଣାରେ ଇନ୍ଦ୍ରଜିତ୍ ମରିଗଲା । କେବଳ ସ୍ୱାମୀର ମୃତ୍ୟୁ ନୁହେଁ, ତାର ପ୍ରାଣହୀନ ଦେହଟା ବି ଫେରିପାଇନାହିଁ ତନ୍ଦ୍ରା । ଆରବ ସାଗରର ଅତଳ ଗହ୍ୱରରେ ଇନ୍ଦ୍ରଜିତ୍ କୋଉଠି ଲୁଚି ଯାଇଥିଲା - କେହି ତାର ପତ୍ତା ପାଇଲେ ନାହିଁ ।

ଘରର ସମସ୍ତଙ୍କ ମତ ବିରୁଦ୍ଧରେ ତନ୍ଦ୍ରା ଏଇ ବିବାହ କରିଥିଲା । ସେଥିପାଇଁ ଅଭିମାନରେ କଲିକତାକୁ ଫେରି ନଯାଇ ଦିଲ୍ଲୀକୁ ଚାଲିଆସିଥିଲା । ଡିଫେନ୍ସ କଲୋନୀର ଘରେ ଘର ସଂସାର କରି ତନ୍ଦ୍ରା ମୋତେ ଲେଖିଥିଲା - 'ବାଚ୍ଚୁ, ଆଜି ମୋର ଆପଣାର ବୋଲି କେହି ନାହାନ୍ତି । ଇନ୍ଦ୍ରର ୟୁନିଫର୍ମଗୁଡ଼ିକୁ ସାଇତି ସମ୍ଭାଳି ରଖିବା ଓ ତାର ଫଟୋ ସାମନାରେ ବସିରହିବା ଛଡ଼ା ମୋର ଆଉ କୌଣସି କାମ ନାହିଁ । ଯଦି ପାରୁଚ ଆସ । ହୁଏତ ସାମୟିକ ଭାବେ ହେଲେ ବି ଟିକିଏ ଭଲ ଲାଗିବ ।'

ମୁଁ ଯାଇଥିଲି—ଥରେ ନୁହେଁ, ଅନେକ ଥର । କେବେ ହୁଏତ ଘଣ୍ଟେ ଅଧେ ରହିଛି, କେବେ କେବେ ପୁଣି ସାରାଦିନ, ସାରାସଂଧ୍ୟା ରହିଛି । ବିଧବା ହେଲେ ମଧ୍ୟ ତନ୍ଦ୍ରାର ଦେହରେ ରୂପର ବନ୍ୟା ବହିଯାଉଥିଲା । ନିଷ୍ପ୍ରଭ ହେଲେ ବି, ଆଖିରେ ଥିଲା ବିଦ୍ୟୁତ୍‌ର ଝଲକ । ତାର ମୁହଁକୁ ଅନେଇବାକୁ ମୋତେ ସଙ୍କୋଚ ଲାଗୁଥିଲା, ଭୟ ବି ଲାଗୁଥିଲା । ମୁଁ ତା ପାଖକୁ ଯାଇ ବି ନିକଟତମ ହେବାକୁ ଲଜ୍ଜା ଲାଗୁଥିଲା—ଭୟ ଲାଗୁଥିଲା । ତଥାପି ଯାଉଥିଲି ।

ଦିନେ ପ୍ରାୟ ଜୋର୍ କରି ତନ୍ଦ୍ରାକୁ ନେଇ ମର୍ଣ୍ଣିଂଶୋରେ ଏକ ବଙ୍ଗଳା ସିନେମା ଦେଖିବାକୁ ଗଲି । ସିନେମା ଦେଖିସାରି ହଲ୍‌ରୁ ବାହାରି ଗାଡ଼ିରେ ଚଢ଼ିବା ସମୟରେ ଜଣେ ଭଦ୍ରବ୍ୟକ୍ତି ତନ୍ଦ୍ରାକୁ ଟାଣିଧରି କହିଲେ, 'ହ୍ୟାଲୋ, ହାଉ ଆର୍ ୟୁ ?'

ମୁଁ ଗାଡ଼ି ଭିତରକୁ ଯାଇ ବସି ସିଗାରେଟ୍ ଖଣ୍ଡେ ଲଗେଇ ଦୁଇ ଚାରି ଟାଣ ଟାଣି ସାରିବା ପରେ ତନ୍ଦ୍ରା ଆସି ମୋ ପାଖରେ ବସିଲା । ମୁଁ କିଛି ନପଚାରୁଣୁ ସେ କହିଲା, 'ସେ ହେଉଛନ୍ତି ଇନ୍ଦ୍ରର ଜଣେ ବନ୍ଧୁ ସ୍କାର୍ଡ଼ନ୍ ଲିଡ଼ର୍ ମିଃ ମିତ୍ର । ଆମେ ଅନେକ ଦିନ ଧରି ଯୋଧପୁରରେ ପାଖାପାଖି ରହୁଥିଲୁ ।'

କିଛିଦିନ ପରେ ମୁଁ ଆବିଷ୍କାର କରିଥିଲି ମିତ୍ର ଓ ଆହୁରି କେତେକ ଅଫିସରଙ୍କ ଘନ ଘନ ଯାତାୟାତ ଚାଲିଲା ତନ୍ଦ୍ରାର ଡିଫେନ୍ସ କଲୋନୀ ଫ୍ଲାଟ୍‌କୁ । ମୁଁ ବି ତନ୍ଦ୍ରାର ସେଠିକୁ ଯିବା ଆସିବା କ୍ରମେ କମେଇ ଦେଲି । ଶେଷରେ କିପରି ଓ କାହିଁକି ତନ୍ଦ୍ରାର ଫ୍ଲାଟ୍‌କୁ ଯିବା ବନ୍ଦ କରିଦେଲି, ସେକଥା ମୋର ମନେନାହିଁ । ତେବେ ଏତିକି ମନେ

ଅଛି ଯେ ଅନେକ ଦିନ ପରେ ତାର ଖବରନବାକୁ ଯାଇ ଦେଖିଲି ଘରର କବାଟ ବନ୍ଦ । ମାଳି କହିଲା, 'ମେମ୍ ସାହେବ ମୁମ୍ବାଇ ଚଲାଗିୟା' । ବୁଝିଗଲି ଇନ୍ଦ୍ରଜିତ୍‌ର ଇନ୍‌ସିଓରାନ୍ସ ଓ ପ୍ରଭିଡେଣ୍ଟ ଫଣ୍ଡର ମୋଟା ରକମ୍ ଯୋଗୁଁ ଅନେକ ବନ୍ଧୁ ଜୁଟିଥିଲେ ଏବଂ ସେମାନଙ୍କ ପରାମର୍ଶରେ ସେ ଦିଲ୍ଲୀ ଛାଡ଼ିଛି ।

ଜାଣିଚ ମେମ୍ ସାହେବ, ଏଇ କିଛିଦିନ ତଳେ ହଠାତ୍ ଜାଣିବାକୁ ପାଇଲି ତନ୍ଦ୍ରାର ମୃତ ଦେହଟା ମିଳିଛି ଜଣେ ସମାଜସେବୀଙ୍କ ଅଫିସ୍‌ଘରୁ ! ଚମକି ପଡ଼ିଥିଲି ଖବରଟା ଶୁଣି, ସାମ୍ବାଦିକ ହିସାବରେ ଘଟଣାର ମୋଟାମୋଟି ଏକ ଚିତ୍ର ଆଖି ଆଗରେ ଫୁଟି ଦିଶିଥିଲା । କିନ୍ତୁ ତଥାପି ଥରେ ଚେକ୍‌ଅପ୍ କରିବାକୁ ପୋଲିସ୍ ସୁପରଇନ୍‌ଟେଣ୍ଡେଣ୍ଟଙ୍କ ନିକଟକୁ ଯାଇଥିଲି । ଶୁଣି ଚମକି ପଡ଼ିଥିଲି ଯେ, ବର୍ଷ ପାଞ୍ଚଟା ଭିତରେ ତନ୍ଦ୍ରା ଆହୁରି ତିନୋଟି ବିବାହ କରିଥିଲା ଏବଂ ଏଇ ସମସ୍ତ ରଥୀ-ମହାରଥୀମାନଙ୍କର କାମ-କ୍ରୋଧ-ଲୋଭ ଓ ସର୍ବୋପରି ରାଜନୀତିର ଖେଳରେ ତନ୍ଦ୍ରାର ମୃତ୍ୟୁ ହୋଇଛି ବୋଲି ପୋଲିସ୍ ସନ୍ଦେହ କରୁଛି ।

ତନ୍ଦ୍ରା ନିଜକୁ ଅତ୍ୟଧିକ ଭାବେ ଭଲ ପାଉଥିଲା— ଭଲ ପାଉଥିଲା ଏଇ ପୃଥିବୀକୁ । ସେ ଚାହିଁଥିଲା ଜୀବନର ଅନ୍ତିମ ମୁହୂର୍ତ୍ତ ଯାଏଁ ହସି ହସି ଜୀବନକୁ ଉପଭୋଗ କରିବ, ଖେଳି ଖେଳି ସବୁ ଦୁଃଖକୁ ଭୁଲିଯିବ । କିନ୍ତୁ କାହିଁକି ସେ ପାରିଲାନାହିଁ, କୁହ ତ ? ଜୀବନକୁ ଭଲପାଉଥିଲା ବୋଲି କଣ ତନ୍ଦ୍ରା ଏପରି ଶାସ୍ତି ପାଇଲା ନା ଅନ୍ୟ କିଛି ?

ମେମ୍ ସାହେବ,

ତୁମର ଚିଠି ପାଇ ମୁଁ ବେଶ୍ ଚିନ୍ତିତ ହୋଇପଡ଼ିଛି । ହସ ବି ଲାଗୁଛି; ମଜା ବି ଲାଗୁଛି । କେମ୍ବ୍ରିଜ୍‌କୁ ଯାଇ ତୁମକୁ ଭଲ ଲାଗିଛି ଜାଣି ଖୁସି ହେଲି । ମୋତେ ବି ଭଲ ଲାଗିଥିଲା । ଟ୍ରିନିଟି ଓ କିଙ୍ଗ୍‌ସ୍ କଲେଜକୁ ଯାଇ ଗତ କେତେ ଶତାବ୍ଦୀର ଇତିହାସ ମୋ ଆଖି ଆଗରେ ବି ଜୀବନ୍ତ ହୋଇ ଉଠିଥିଲା । ଛାତ୍ରମାନଙ୍କୁ ଦେଖି ମନେ ମନେ ହୁଏତ ଟିକିଏ ହିଂସା ବି ଉଦ୍ରେକ ହୋଇଥିଲା । ଆନନ୍ଦ ବି ଲାଗିଥିଲା । କିନ୍ତୁ ତୁମଭଳି ସ୍ୱପ୍ନ ଦେଖିବାର ସାହସ ବା କ୍ଷମତା ମୋର ନାହିଁ । ତୁମ ପୁଅକୁ ସେଠିକି ପଠେଇବ ବୋଲି ମନ ସ୍ଥିର କରିସାରିଛ ଜାଣି ମନେ ମନେ ବେଶ୍ ମଜା ଲାଗୁଛି । ତୁମେ ଲେଖିଛ ତୁମ ପୁଅ ପ୍ରଫେସର୍ ସାଥିରେ ତର୍କ କରି କରି କ୍ଲାସ୍‌ରୁ ବାହାରିବ ଏବଂ ଆମେ ଦୁହେଁ ଦୂରରୁ ଥାଇ ତାହା ଦେଖିବା — ତୁମ ପୁଅ କ୍ୟାମ୍ ନଦୀରେ ନୌ-ବିହାର କରି କରି ଲିଟରେଚର୍ ବା ହିଷ୍ଟ୍ରୀ ସମ୍ବନ୍ଧରେ ବନ୍ଧୁମାନଙ୍କ ସହିତ ଆଲୋଚନା କରିବ ଏବଂ ଆମେଦୁହେଁ ପାଣିଧାରରେ ଘାସ ଉପରେ ବସି ବସି ସେଇ ଆଲୋଚନା

ଶୁଣିବା । କେବଳ କ'ଣ ସେତିକି ? ତୁମେ ସ୍ଥିର କରିସାରିଛ ତୁମର ପୁଅ ଲିଡର୍ ଅଫ୍ ଦି ଅପୋଜିସନ୍ ହେଇ-ମିଃ ସ୍ପିକର ସାର୍‌ଙ୍କ ସମ୍ମୁଖରେ ପ୍ରାଇମ୍ ମିନିଷ୍ଟର୍‌ଙ୍କ ବିରୁଦ୍ଧରେ ଅଭିଯୋଗ ଆଗତ କରିବ ଏବଂ ମିଃ ସ୍ପିକର୍ ତାର ପ୍ରଶଂସାରେ ପଞ୍ଚମୁଖ ହେଲେ, ତୁମେ ଓ ମୁଁ ଆନନ୍ଦରେ ପଛରୁ ତାଳି ମାରିବା ।

ତୁମେ ଯେ ମନେ ମନେ ଏତେଦୂର ଆଗେଇଯାଇଛ, ସେକଥା ମୁଁ ଆଗେ ଜାଣିପାରିନଥିଲି । ତୁମେ ମୁହଁରେ କିଛି ପ୍ରକାଶ ନ କଲେ ବି ମନର କ୍ୟାନ୍‌ଭାସ୍‌ରେ ସ୍ୱପ୍ନର ତୂଳିକାରେ ଛବିକୁ ଠିକ୍ ଆଙ୍କି ଚାଲିଛ । ସେଇଥିପାଇଁ ଆଜି ନୂଆକରି ପୁଣିଥରେ ପ୍ରତିଜ୍ଞା କରୁଛି, ତୁମ ଜୀବନକୁ ମଧୁର କରି ତୋଳିବି, ତୁମକୁ ଖୁସି କରିବି, ତୁମର ସ୍ୱପ୍ନକୁ ସାର୍ଥକ କରି ତୋଳିବି ମୁଁ ।

କିଛିଦିନ ପୂର୍ବେ କେତେଜଣ ବନ୍ଧୁଙ୍କ ପାଲରେ ପଡ଼ି ହୋଟେଲ୍ ଇଣ୍ଟରନ୍ୟାସ୍‌ନାଲରେ କ୍ୟାଣ୍ଡେଲ୍-ଲାଇଟ୍-ଡିନର୍ ଡ୍ୟାନ୍ସ ପ୍ରୋଗ୍ରାମ୍‌ରେ ଯାଇଥିଲି । ରାତି ନ'ଟାରେ ପ୍ରୋଗ୍ରାମ୍ ଆରମ୍ଭ ହେବାର ଥିଲେ ବି କାମଦାମ ସାରି ମୁଁ ପହଞ୍ଚିଲା ବେଳକୁ ରାତି ସାଢ଼େନଅ ବାଜିଯାଇଥିଲା । ଶ୍ୟାମ୍ପେନ୍ ପର୍ବ ଶେଷ ନହୋଇଥିଲେ ବି ଅଧିକାଂଶଙ୍କର ଡିନରଖିଆ ସରିଯାଇଥିଲା । ଡ୍ୟାନ୍ସ ମଧ୍ୟ ଆରମ୍ଭ ହୋଇଯାଇଥିଲା । କ୍ୟାଣ୍ଡେଲ୍ ଲାଇଟ୍‌ର ଝାପ୍‌ସା ଆଲୁଅରେ ନିବିଡ଼ ଭାବରେ ଧରାଧରି ହୋଇ ଦୁଇ ଦୁଇଜଣ ନାଚୁଥାନ୍ତି । ଲାଉଡ୍ ସ୍ପିକର୍‌ରେ ଅତି ଧୀର ସ୍ୱରରେ ସ୍ପାନିଶ୍ ମିଉଜିକ୍ ଭାସି ଚାଲୁଥିଲା । ମୁଁ ଖାଉ ଖାଉ ଏସବୁ ଉପଭୋଗ କରୁଥିଲି । ଆବହାଉଆଟା ବେଶ୍ ମାତାଲ ମାତାଲ ଲାଗୁଥିଲା । ତୁମେ ପାଖରେ ଥିଲେ ହୁଏତ ସେଇ ରାତିରେ ନାଚିଥାନ୍ତି । ଅନ୍ୟ କୌଣସି ଝିଅ ସାଥିରେ ନାଚିବାର ଦୁଃସାହସ ମୋର ନାହିଁ, ସେଥିପାଇଁ ଚୁପ୍‌ଚାପ୍ ବସି ବସି ଶ୍ୟାମ୍ପେନ୍ ଗ୍ଲାସ୍‌ଟିକୁ ଧରୁଥିଲି, ଥୋଉଥିଲି ଆଉ ନାଚ ଦେଖୁଥିଲି ।

ଚାରିଆଡ଼କୁ ଚାହିଁ ଦେଖିଲି ସବୁ ଟେବୁଲ୍ ଫାଙ୍କା ପଡ଼ିଛି- ସମସ୍ତେ ନାଚୁଛନ୍ତି । ଦୂରରେ ପ୍ରାୟ ପଛଆଡ଼କୁ ଭଲକରି ଚାହିଁ ଦେଖିଲି ଏକ ଯୋଡ଼ି ବସିଛନ୍ତି । ଝାପ୍‌ସା ଆଲୁଅରେ ଠିକ୍ ଭାବରେ ଚିହ୍ନି ନପାରିଲେ ବି ବୁଝିପାରିଲି ଭଦ୍ରଲୋକ ଧୋତି ପଞ୍ଜାବୀ ପିନ୍ଧିଛନ୍ତି । ଆମ ଦେଶର ଝିଅମାନଙ୍କର ମମତା ଅସୀମ, ସେମାନେ ଶାଢ଼ିପିନ୍ଧି ନାଚିପାରନ୍ତି, କିନ୍ତୁ ପୁରୁଷ ଲୋକେ ଧୋତି ପିନ୍ଧି ପାରନ୍ତି ନାହିଁ । ସେଥିପାଇଁ ସେଇ ରାତି ଧୋତିପିନ୍ଧା ଭଦ୍ରବ୍ୟକ୍ତିଙ୍କୁ ଦେଖି ଆଗ୍ରହ ସଂଚାର ହେଲା ।

ଗୋଟେ ରାଉଣ୍ଡ ନାଚ ଶେଷ ହେଲା । ମିଉଜିକ୍ ବନ୍ଦ ହେଇଗଲା । ଆଲୁଅ ଜଳି ଉଠିଲା । ଯେଝା ଯେଝା ଟେବୁଲକୁ ଆସି ଶ୍ୟାମ୍ପେନ୍ ଗ୍ଲାସମାନ ଧରି ବସିପଡ଼ିଲେ । ସମସ୍ତେ ଯେତେବେଳେ ବସିପଡ଼ିଲେ ସେତେବେଳେ ମୁଁ ଚିହ୍ନାମୁହଁ ଖୋଜିବା ପାଇଁ ବାହାରିପଡ଼ିଲି । ଦୁଇପା'ଦ ଆଗଉ ଆଗଉ ମିଃ ଏଣ୍ଡ ମିସେସ୍ ସହାୟଙ୍କ ସହିତ

ଦେଖାହେଲା । ତାପରେ ମିଃ ଓ ମିସେସ୍ ତାନେଜା, ଭରଦ୍ୱାଜ, ମିସ୍ ସୁନ୍ଦରୀ ସିହ୍ନା ଓ ଆହୁରି ଅନେକଙ୍କ ସହିତ ଦେଖାହେଲା । ପ୍ରତ୍ୟେକ ଟେବୁଲ୍ ପାଖରେ ଦୁଇଚାରି ମିନିଟ୍ ଠିଆହୋଇ କଥାବାର୍ତ୍ତା ହେଇ ପଛଆଡ଼କୁ ଆଗଉ ଆଗଉ ପୁଣି ଆଲୁଅ ଲିଭିଗଲା । ଲାଉଡ୍ ସ୍ପିକର୍‌ରେ ହାଉଆଇଆମ୍ ଗୀଟାର୍ ବାଜିଉଠିଲା । କ୍ୟାଣ୍ଡେଲ୍ ଲାଇଟ୍‌ର ଝାପ୍‌ସା ଆଲୁଅରେ ନାଚ ଆରମ୍ଭ ହେବା ସଂଗେ ସଂଗେ ମୁଁ ଗୋଟିଏ ଖାଲି ଟେବୁଲ୍ ପାଖରେ ବସିପଡ଼ିଲି ।

ଟିକିଏ ପରେ ବେହେରାକୁ ଇସାରା ଦେବାରୁ ସେ ଡ୍ରିଙ୍କସ୍ ଥୋଇଦେଇଗଲା । ଥରେ ଗ୍ଲାସ୍‌ରେ ଚୁମକ ଦେଇ ସିଗାରେଟ୍‌ରେ ନିଆଁ ଧରାଉ ଧରାଉ ହଠାତ୍ ପାଖରୁ ବଙ୍ଗଳା କଥା ଭାଷା ଶୁଣି ସେଇଆଡ଼କୁ ଚାହିଁ ଦେଖେ ପ୍ରଫେସର୍ ଚାଟାର୍ଜି । ପ୍ରଥମେ ନିଜ ଆଖିକୁ ବିଶ୍ୱାସ କରିପାରିଲିନାହିଁ । କିନ୍ତୁ ଭଲ ଭାବରେ ଦୁଇଚାରିଥର ଦେଖି ନେଇ ଜାଣିଲି ଅବିଶ୍ୱାସ କରିବାର କାରଣ ନାହିଁ । ସଙ୍ଗିନୀ ଜଣକ ଯେ ତାଙ୍କର ଜଣେ ଛାତ୍ରୀ ତାହା ମଧ ସନ୍ଦେହାତୀତ । ସେମାନଙ୍କ ମିଠାମିଠା କଥାବାର୍ତ୍ତାରୁ ଟିକିଏ ଟିକିଏ ଭାସିଆସୁଥିଲା ମୋ କାନ ଆଡ଼କୁ । ଜାଣିଚ ମୀରା, ପ୍ରଥମ ଦିନ ତୁମ କ୍ଲାସ୍‌କୁ ଯାଉ ଯାଉ ତୁମେ ମୋତେ ଖୁବ୍ ଭଲ ଲାଗିଥିଲ । ସେଇଥିପାଇଁ ତ ତୁମକୁ ଅଲଗା ଡାକିନେଇ ନୋଟ୍ ଦିଏ...ଲାଉଡ୍‌ସ୍ପିକର୍‌ରେ ହାଉଆଇଆମ୍ ଗୀଟାର୍‌ର ସ୍ୱରଟା ହଠାତ୍ ଜୋର୍‌ରେ ବାଜିଉଠିବାରୁ ପ୍ରଫେସର୍‌ଙ୍କ କଥା ଆଉ ଶୁଣିପାରିଲି ନାହିଁ ।

ପ୍ରଫେସର୍ ଚାଟାର୍ଜୀଙ୍କର ଛାତ୍ରୀପ୍ରୀତିର କଥା କଲେଜ୍‌ଷ୍ଟ୍ରୀଟ୍‌ର କେଫ୍-ରେଷ୍ଟୁରେଣ୍ଟମାନଙ୍କରେ ଛାତ୍ରଛାତ୍ରୀମାନଙ୍କର ସହଜ ଆଲୋଚନା ବିଷୟ । ତୁମକୁ ଏସବୁ କଥା ସେତେବେଳେ କହୁଥିଲା ବେଳେ ତୁମେ ମୋତେ ଦୋଷ ଦେଉଥିଲ । କହୁଥିଲ, ସାମ୍ବାଦିକମାନେ ସବୁରି ଭିତରେ ଅସଭ୍ୟତାକୁ ଦେଖିଥାନ୍ତି । କିନ୍ତୁ ପରେ ଯେତେବେଳେ ମିସେସ୍ ଦାସଗୁପ୍ତାଙ୍କ ଠାରୁ ତୁମେ ନିଜେ ଶୁଣିଲ ପ୍ରଫେସର୍ ଚାଟାର୍ଜୀଙ୍କ ସାଙ୍ଗରେ କୌଣସି ଝିଅପିଲା ଏକୁଟିଆ ଲିଫ୍‌ଟରେ ଚଢ଼ନ୍ତି ନାହିଁ, କୌଣସି ଝିଅ ପିଲାର ଦେହରେ ହାତ ନଦେଇ ସେ କଥା କହିପାରନ୍ତି ନାହିଁ, ସେତେବେଳେ ଯାଇ ତୁମେ ବିଶ୍ୱାସ କରିବାକୁ ବାଧ ହେଲ । ତାପରେ ମୈତ୍ରୟୀ ଦିଦିଙ୍କଠୁ ଶୁଣିଛ ସେମାନଙ୍କ କ୍ଲାସ୍‌ର ସୁଲେଖା ମିତ୍ର ସହିତ ପ୍ରଫେସର୍‌ଙ୍କ ଭାବ ଓ ମିଳାମିଶା ଦେଖି ଚାରିଆଡ଼େ ପ୍ରଚାର ହେଇଗଲା ଯେ ସେମାନଙ୍କ ବାହାଘର ହଉଛି । ଏ ଧରଣର ମିଳାମିଶା ଓ ବାହାଘର ଗୁଜବ ଥରେ ନୁହେଁ, ବହୁତଥର ରଟିଛି ।

ପ୍ରଫେସର୍ ଚାଟାର୍ଜୀ ଜଣେ ପୋଖତ ଶିକାରୀ । ଗୋଟିଏ ଶିକାର କରି ସେ ମହାଶୟ ନିଶ୍ଚିନ୍ତରେ ବସିରହି ପାରନ୍ତିନାହିଁ । ପ୍ରକୃତରେ ଋତୁ ପରିବର୍ତ୍ତନ ଭଳି ପ୍ରଫେସର୍ ଚାଟାର୍ଜୀଙ୍କର ଛାତ୍ରୀପ୍ରୀତି ମଧ ବଦଳୁଥାଏ । ତୁମେ ବିଶ୍ୱାସ କର ମେମ୍ ସାହେବ,

ପୁରୀରେ ପ୍ରଫେସର୍ ଚାଟାର୍ଜୀ ଯାହା ସଙ୍ଗେ ବୁଲୁଥିବା ଦେଖିଥିଲି, ପରବର୍ତ୍ତୀ ବର୍ଷ ଦାର୍ଜିଲିଂର ବାର୍ଚିହିଲ୍‌ରେ ତା ସଙ୍ଗେ ବୁଲିବା ଦେଖିଲି ନାହିଁ । ସେଦିନ ରାତିରେ ଏଇ ଦିଲ୍ଲୀର ହୋଟେଲ୍‌ରେ କ୍ୟାଣ୍ଡଲ୍ ଲାଇଟ୍ ଡିନର୍ ଡ୍ୟାନ୍ସକୁ ଯେଉଁ ମୀରାକୁ ସାଙ୍ଗରେ ଆଣି ଆସିଥିଲେ, ସେଇ 'ମୀରା'ର ଭଜନ ପ୍ରଫେସର୍ ଆସନ୍ତା ଶୀତ ଋତୁରେ ଆଉ ଶୁଣିବାକୁ ଯେ ପାଇବେ ନାହିଁ– ଏ କଥା ମୁଁ ନିଶ୍ଚିତ ଭାବେ ଜାଣିଛି ।

ଦେଖ ମେମ୍ ସାହେବ, ବଙ୍ଗଳା ଦେଶର ଅସଂଖ୍ୟ ଛାତ୍ରଛାତ୍ରୀଙ୍କ ପରି ମୁଁ ବି ପାଣ୍ଡିତ୍ୟ ପାଇଁ ପ୍ରଫେସର୍ ଚାଟାର୍ଜୀଙ୍କୁ ଶ୍ରଦ୍ଧା କରେ; କିନ୍ତୁ ଦସ୍ ଫାର୍ ନୋ ଫାର୍ଦର୍ । ମୋ ଘରର ଦ୍ୱାରବନ୍ଧ ପର୍ଯ୍ୟନ୍ତ ତାଙ୍କୁ ମାଡ଼ିବାକୁ ଦେବାକୁ ଚାହେଁ ନା । ସେଦିନ ରାତିରେ କିଛିକ୍ଷଣ ପରେ ଦେଖିଲି ମୀରାକୁ ନିବିଡ଼ଭାବେ ଜାବୁଡ଼ିଧରି ପ୍ରେମ କବିତା ଆବୃତ୍ତି କରି ଶୁଣେଇଥିଲେ ପ୍ରଫେସର୍ ଡକ୍ଟର ଚାଟାର୍ଜୀ, ଏମ୍.ଏ., ପିଏଚ୍.ଡି., ପି.ଆର୍.ଏସ୍ ।

ମଧ୍ୟରାତ୍ରୀର ବହୁତ ପରେ ଆସର ଭାଙ୍ଗିଲା । ମୁଁ ନିଃଶବ୍ଦରେ ଅନୁସରଣ କରି ଦେଖିଲି ପ୍ରଫେସର୍ ଓ ମୀରା ସେକେଣ୍ଡ ଫ୍ଲୋରର ଗୋଟିଏ କୋଠରୀରେ ପଶିଲେ । ତଳକୁ ଆସି ରିସେପ୍‌ସନ୍‌ରେ ପଚାରି ବୁଝିଲି, 'ପ୍ରଫେସର୍ କେତେ ନମ୍ବର କୋଠରୀରେ ଅଛନ୍ତି ଏବଂ କେବେ ତାଙ୍କର ଡିପାରଚର ?'

ରେଜିଷ୍ଟରର ପୃଷ୍ଠା ଓଲଟାଇ ଦେଖି ରିସେପ୍‌ସନିଷ୍ଟ କହିଲା, 'ୟେସ୍, ପ୍ରଫେସର ଏଣ୍ଡ ମିସେସ୍ ଚାଟାର୍ଜୀ ରୁମ୍ ନମ୍ବର ଥ୍ରି ଫୋର୍ ସିକ୍ସ ।.. ଦେ ହ୍ୟାଭ୍ ରିଜର୍ଭେସନ୍ ଅପ୍ ଟୁ ନେକ୍ସ୍ଟ ସନ୍-ଡେ ।'

ମୁଁ ଧନ୍ୟବାଦ ଜଣେଇ ବିଦାୟ ନେଲି ।

ଇଣ୍ଟରନ୍ୟାସନାଲ୍ ଆସୋସିଏସନ୍‌ର ଆନୁକୂଲ୍ୟରେ ପ୍ରଫେସର୍ ଚାଟାର୍ଜୀଙ୍କ ଏକ ସମ୍ବର୍ଦ୍ଧନା ସଭାରେ ଯୋଗଦାନ ପାଇଁ ନିମନ୍ତ୍ରଣପତ୍ର ପାଇ ମୁଁ ଯାଇନି, କିନ୍ତୁ ପରଦିନ ସକାଳେ ସବୁ ଖବରକାଗଜରେ ଏଇ ରିପୋର୍ଟ ବାହାରିଥିଲା । ସଭାପତି ଭାଷଣରେ ଡକ୍ଟର ରାଓ କହିଥିଲେ, ପଢ଼ାଶୁଣା ଗବେଷଣା ଏବଂ ଛାତ୍ରଛାତ୍ରୀମାନଙ୍କ ସକାଶେ ପ୍ରଫେସର୍ ଚାଟାର୍ଜୀ ନିଜର ସଂସାର ଗଢ଼ିବାକୁ କେବେ ସମୟ ପାଇଲେ ନାହିଁ । କିଛିଦିନ ଭିତରେ ଲେକ୍‌ଚର ଟୁର୍‌ରେ ସେ ମହାଶୟ ଲଣ୍ଡନ ଯାଉଛନ୍ତି ବୋଲି ଖବରଟା ମଧ୍ୟ ବାହାରିଥିଲା । ତୁମେ ତାଙ୍କ ମିଟିଂକୁ ନଗଲେ ହିଁ ଭଲ । ତେବେ ନିହାତି ଯଦି ତାଙ୍କ ବକ୍ତୃତା ଶୁଣିବାକୁ ଇଚ୍ଛା କର ତେବେ ମୁଣ୍ଡରେ ଓଢ଼ଣାଟାଣି ଏକବାର୍ ପଛଧାଡ଼ିରେ ବସିବ ଏବଂ ବକ୍ତୃତା ଶେଷ ହେବା ପରେ ଏକ ସେକେଣ୍ଡ ବି ଅପେକ୍ଷା କରିବ ନାହିଁ । ଯଦି ଉଚିତ ଭାବିବ, ତେବେ ତୁମର ଘନିଷ୍ଠ ବନ୍ଧୁମାନଙ୍କୁ ମଧ୍ୟ ମୁଣ୍ଡରେ ଓଢ଼ଣା ଟାଣି ବସିବାକୁ କହିବ, କଣ କହୁଛ ?

ସ୍ନେହ ଜାଣିବ

ତୁମରି ବାଚ୍ଚୁ ।

ମେମ୍ ସାହେବ;

କିଛିଦିନ ହେଲା ଦିଲ୍ଲୀରେ ଯେଉଁ ଗରମ ପଡ଼ିଛି ତାହା ଆଜି ତୁମ କଳ୍ପନାର ବାହାରେ । ଏବେ ତ ତୁମେ ପାଖରେ ନାହଁ । ପ୍ରତ୍ୟାଶାହୀନ ଅପରାହ୍ନର ଆଶାର ଦ୍ୱିପ୍ରହର ସତେକି ଆଉ କଟିବାକୁ ଚାହେଁନା । ସେଥିପାଇଁ ବୁକୁ ଭିତରେ ଏକ ଜ୍ୱାଳା ହିଁ ସବୁବେଳେ ଉପସ୍ଥିତ । ତଦୁପରି ଏଇ ନିଦାରୁଣ ଅସହ୍ୟ ଗରମ ସାରା ଦେହଟାକୁ ଜଳେଇବା ଆରମ୍ଭ କରିଛି । ରବୀନ୍ଦ୍ରନାଥ ଗାଇଥିଲେ- 'ଏଇ ଶ୍ରାବଣେର ବୁକେର୍ ଭିତର୍ ଆଗୁନ୍ ଆଛେ', କିନ୍ତୁ ଆଜି ଏଇ ଆଷାଢ଼ ମାସରେ ହିଁ ମୋ 'ବୁକୁ' ଭିତରେ ଅହରହ ନିଆଁ ଜଳୁଛି । ଜାଣିନି କଣ ହବ ଶ୍ରାବଣରେ । ଆଚ୍ଛା, ତୁମ ବୁକୁ ଭିତରେ କଣ ନିଆଁ ଜଳୁନି ? ମନ ଭିତରେ ଏକ ବିରାଟ ଶୂନ୍ୟତାକୁ ଅନୁଭବ କରୁନ ?

ଯା ଭିତରେ ଦିନେ ତୁମ ଭାଇଙ୍କ ଟେଲିଗ୍ରାମ୍ ପାଇଲି — ଆଟେଣ୍ଡ ଦିଲ୍ଲୀ ଏକ୍ସପ୍ରେସ୍ ସନ୍-ଡେ । ଷ୍ଟେସନ୍‌କୁ ଯାଇ ଦେଖିଲି ତୁମ ଭାଇଙ୍କ ସହିତ ଭାଉଜ, ବାବୁଆ ଓ ସାନବୋହୂ ହେରିକା ବି ଆସିଛନ୍ତି । 'କାଲ୍‌କା ମେଲ୍'ରେ ସିଧା ସିମ୍‌ଲା ରିଜରଭେସନ୍ ନପାଇ ସେମାନେ ଦୁଇଦିନ ପାଇଁ ମୋର ଆତିଥ୍ୟ ଉପଭୋଗ କଲେ । ତୁମର ସାନଭଉଣୀକୁ ସାନବୋହୂ ବୋଲି ଦୁଇଚାରିଜଣଙ୍କ ସହିତ ପରିଚୟ କରାଇଦେବାରୁ ତାର କି ରାଗ ! ଖତେଇ ହେଇ ହେଇ, ଚିମୁଟି ଚିମୁଟି ମୋତେ ପୂରା ବେଦମ୍ କରିଦେଲା ସେଇ ଦୁଇଦିନଯାକ । ମୁଁ ବହୁତଥର କହିଲି- ଦେଖ ସାନବୋହୂ ! ତୁମେ ବର୍ତ୍ତମାନ ବଡ଼ ହେଲଣି, କଲେଜରେ ପଢ଼ିଲଣି, ମୋ ଭଳି ଜଣେ ଦୁଷ୍ଟ ରିପୋର୍ଟର୍ ସାଙ୍ଗରେ ଏମିତି ଲାଗିଲେନା ତୁମର ବଦ୍‌ନାମ ହେବ । ଆହୁରି ବି ଡରେଇଲି- ସେଇ ବଦ୍‌ନାମ ପାଇଁ ମେମ୍‌ସାହେବଙ୍କ ବାହାଘର କଷ୍ଟକର ହେଇପାରେ । ଏକଥା ଶୁଣି ତୁମର ଭାଉଜ ଆଉ ସାନବୋହୂ ଦୁହେଁ ହୋ ହୋ କରି ହସିପକେଇଲେ; ତୁମ ଭାଇ ତ ବୁଲିପଡ଼ି ମୁହଁ ଲୁଚେଇଲେ । କିନ୍ତୁ ଡ୍ରେସିଂ ଟେବୁଲ୍‌ର ଦର୍ପଣରେ ନଜର ପଡ଼ିବାରୁ ଦେଖିଲି ସେ ବି ହସୁଛନ୍ତି । କାହିଁକି ସେମାନେ ହସୁଥିଲେ କହିପାରିବ ମେମ୍ ସାହେବ ? ସତେ କ'ଣ ତୁମ ବାହାଘର ପାଇଁ ସେମାନେ ଅଦୌ ଚିନ୍ତିତ ନୁହଁନ୍ତି ?

କାଲ୍‌କା-ମେଲ୍‌ରେ ଚଢ଼େଇ ଦେଲି ସେମାନଙ୍କୁ । ଗାଡ଼ି ଛାଡ଼ିବାର ଦୁଇଚାରି ମିନିଟ୍ ଆଗରୁ ତୁମ ଭାଉଜ ମୋ କାନରେ କହିଲେ, 'ତାପସୀ ବିଲାତରୁ ଫେରିଲେ ବାପା-ମା ଆଉ ଡେରି କରିବେ ନାହିଁ ମ । ପ୍ରସ୍ତୁତ ହେଇ ରୁହ ।' କଥାଟା ଶେଷ ହେଉ ନ ହେଉଣୁ ଗାର୍ଡ଼ ସାହେବଙ୍କ ବଂଶୀ ବାଜି ଉଠିଲା । ଗାଡ଼ି ଛାଡ଼ି ଦେଲା ।

ଅନେଇ ଦେଖିଲି ହସି ହସି ତୁମ ଭାଉଜ ରୁମାଲ୍ ହଲଉଛନ୍ତି ଆଉ ସାନବୋହୂ ଖତେଇ ହଉଛନ୍ତି । ଜାଣିଚ ମେମ୍ ସାହେବ, ସେଦିନ ରାତିରେ ତୁମ ଭାଉଜଙ୍କ କଥା ଶୁଣିବା ପରେ ମନ ହଉଛି ହଠାତ୍ ଯେମିତି ଗରମଟା କମିଗଲା ନା କଣ । ଦେହ ମନର ଜ୍ୱାଳା ଯନ୍ତ୍ରଣା ବି ସତେକି ଅନେକଟା କମିଯାଇଛି । କାହିଁକି ଏପରି ହେଲା କହିପାରିବ ?

କିଛିଦିନ ପୂର୍ବେ ସାପ୍ରୁ ହାଉସ୍‌ରେ ଏକ ସର୍ବଭାରତୀୟ ଆସରକୁ ଯାଇଥିଲି । ଇଣ୍ଟରଭାଲ୍ ସମୟରେ ଲାଉଞ୍ଜରେ ଠିଆହେଇ ସିଗାରେଟ୍ ଟାଣୁ ଟାଣୁ କେତେଜଣ ବନ୍ଧୁବାନ୍ଧବଙ୍କ ସହିତ ଗପ କରୁଥିଲି । ପାଖରେ ଭିଡ଼ ଦେଖି ଅନେଇ ଦେଖିଲି ମିସେସ୍ ପଦ୍ମିନୀ ପଦ୍ମନାଭନଙ୍କୁ ଘେରିଛନ୍ତି ଦଳେ ପୁଅ ଝିଅ । ଶୁଣିଲି, ଗୋଟେ କଲ୍‌ଚରାଲ୍ ଡେଲିଗେସନ୍‌ରେ ବାହାରକୁ ଯିବା ବାଟରେ ଦିଲ୍ଲୀ ଆସିଛନ୍ତି ଶୁଣି ଏଠି ବି ଗୀତ ଗାଇବା ପାଇଁ ଉଦ୍ୟୋକ୍ତାମାନେ ତାଙ୍କୁ ଧରି ଆଣିଛନ୍ତି । ଭିଡ଼କୁ ଠେଲି ଆଗେଇଯାଇ ଜଣାଇଲି- ମୁଁ ବି ହାଜର୍ । ପଦ୍ମିନୀ ଭାଉଜ ମୋତେ ଦେଖୁ ଦେଖୁ ସତେକି ହାତ ପାଖରେ ସ୍ୱର୍ଗକୁ ପାଇଗଲେ । 'ପ୍ଲିଜ୍ ଏକ୍ସକିଉଜ୍ ମି' କହି ଭିଡ଼ ଭିତରୁ ନିଜକୁ ଉଦ୍ଧାର କରି ମୋତେ ଗୋଟେ ପାଖକୁ ଟାଣିନେଇ କହିଲେ, 'ଏଇମାତ୍ର ଦେଢ଼ଘଣ୍ଟା ହେଲା ଆସିଲି । ପାଲାମ୍‌ରେ ଓହ୍ଲେଇ ତୋତେ ଟେଲିଫୋନ୍ କରିଥିଲି, କିନ୍ତୁ ନୋ-ରିପ୍ଲାଇ ହେଲା ।'

ମୁଁ କହିଲି, 'ଭାଉଜ, ତୁମେ ଯେ ଏଠିକୁ ଆସିବ ସେକଥା ତ ମୁଁ ଜାଣିନଥିଲି । ତାଛଡ଼ା ମୁଁ ଯେ ଏଇ ମିଉଜିକ୍ କନ୍‌ଫରେନ୍ସକୁ ଆସିବି ତା ବି ଠିକ୍ ହୋଇନଥିଲା । ରବିବାରର ସକାଳଟା ଏକା ଏକା ଭଲ ଲାଗୁନଥିଲା, ଏଣୁ ଚାଲି ଆସିଲି । ଏବେ ମନେ ହେଉଛି ଆସି ଭଲ ହେଲା । ରବିବାରଟା ଭଲରେ ଭଲରେ କଟିବ-କଣ କହୁଛ ଭାଉଜ ?'

ବେଶ୍ ହସିହସି ଭାଉଜ କହିଲେ, 'ନିଶ୍ଚୟ ଭଲରେ କଟିବ ।'

ଇଣ୍ଟରଭାଲ୍ ସରିଲା । ଭିତରକୁ ଗଲି । ଦୁଇଜଣଙ୍କ ପରେ ପଦ୍ମିନୀ ଭାଉଜ ଦୁଇଟି ମୀରା ଭଜନ ଗାଇଲେ । କିଛିସମୟ ପରେ ଗେଟ୍ କିପର୍ ଆସି ଇଙ୍ଗିତ ଦେବାରୁ ଦେଖିଲି ପଦ୍ମିନୀ ଭାଉଜ ଦରଜା ପାଖରେ ଠିଆ ହେଇଛନ୍ତି ।

ପଦ୍ମିନୀ ଭାଉଜ ସାରାଦିନ ଦିଲ୍ଲୀରେ ଥିଲେ । ରାତି ପ୍ଲେନ୍‌ରେ ୟୁରୋପ ବାଟଦେଇ କାଏରୋ ଚାଲିଗଲେ । ଦିନଟାଯାକ ଖୁବ୍ ହଇଚଇ କଲୁ । ବହୁତ ବୁଲିଲୁ, ବହୁତ ଖାଇଲୁ । ପାଲାମରେ ବିଦାୟ ନେଲାବେଳେ ପଦ୍ମିନୀ ଭାଉଜ କହିଲେ, 'ବାବୁ, ତୋ ଭଳି ଭାଇ ନଥିଲେ ଦିଲ୍ଲୀଟା ମୋ ପାଇଁ ମରୁଭୂମି ହେଇଯାଇଥାନ୍ତା ।'

ମୁଁ କହିଲି, 'ତୁମର ସ୍ନେହ ଶ୍ରଦ୍ଧା ନ ପାଇଥିଲେ ମୋ ଜୀବନଟା ବି ଅପୂର୍ଣ୍ଣ ରହିଯାଇଥାନ୍ତା ।'

ଭାଉଜ ବିଦାୟ ନେବା ପରେ ମୁଁ ଏୟାରପୋର୍ଟ ରେଷ୍ଟୁରେଣ୍ଟକୁ ଆସି ଚା'-ପିଇବାକୁ ବସିଗଲି । ଚୁପ୍‌ଚାପ୍ ବସି ବସି ପଦ୍ମିନୀ ଭାଉଜଙ୍କ ସହିତ ମୋର ପ୍ରଥମ ପରିଚୟର କଥା ମନେପଡ଼ିଲା - ମନେପଡ଼ିଲା ତାଙ୍କର ଆଖି ଲୁହର ଇତିହାସ ।

ପାଞ୍ଚ ବର୍ଷ ପୂର୍ବେ ହଠାତ୍ ଜରୁରୀ କାମରେ ନାଇଟ୍ ଏୟାର୍‌ମେଲ୍‌ର ସ୍କାଇ ମାଷ୍ଟର୍ ପ୍ଲେନ୍‌ରେ ଚଢ଼ିବାକୁ ପଡ଼ିଥିଲା ମୋତେ ମାଡ୍ରାଜ ଯିବା ପାଇଁ । ପ୍ଲେନ୍‌ରେ ଚଢ଼ି ଦେଖିଲି ମୋ ପାଖରେ ଜଣେ ସୁଦର୍ଶନା ଦକ୍ଷିଣ ଭାରତୀୟ ମଧ୍ୟବୟସୀ ମହିଳା ବସିଛନ୍ତି । ଝରକା ଦେଇ ବାହାରକୁ ଅନେଇ ରହିଥିବାରୁ ପ୍ରଥମେ ଦେଖିପାରିନଥିଲି । ପରେ ପ୍ଲେନ୍ ଛାଡ଼ିବା ପୂର୍ବରୁ ସିଟ୍ ବେଲ୍ଟ ବାନ୍ଧିବା ବେଳେ ମୁହଁଟା ଦେଖି ମନେହେଲା, କେଉଁଠି ଯେମିତି ଦେଖିଛି ଭଦ୍ରମହିଳାଙ୍କୁ ।

କିଛିକ୍ଷଣ ପରେ ପ୍ଲେନ୍ ପାଲାମ୍‌ର ମାଟି ଛାଡ଼ି ଉଡ଼ିଲା । ଷ୍ଟିୱାର୍ଡ଼ ଟଫି-ଚକୋଲେଟ୍ ଦେଇସାରି ଗୋଟିଏ ଛୋଟ ଲାଇଟକୁ ଛାଡ଼ି ବାକିସବୁ ଲିଭେଇ ଦେଇ ଶୋଇପଡ଼ିବାକୁ ଇଙ୍ଗିତ ଦେଲା । ନିଦ୍ର ନମାଡୁଥିଲେ ବି ଉପର ର୍‍ୟାକ୍‌ରୁ ତକିଆଟାଏ ଟାଣିଆଣି ମୁଣ୍ଡ ତଳେ ଦେଇ ଚିତ୍ ହେଇ ଶୋଇଗଲି । କେତେବେଳେ ଛପି ଛପି ନିଦ ଚାଲିଆସିଛି, ତାର ଟେର୍ ପାଇଲି ନାହିଁ । କେମିତି ଗୋଟେ ସକ୍ ସକ୍ କାନ୍ଦଣା ସ୍ୱରରେ ନିଦଟା ଭାଙ୍ଗିଗଲା । ଆଖି ଖୋଲି ଚାହିଁଲି ସାରା ପ୍ଲେନ୍‌ଟାର ଲୋକ ନିଘୋଡ଼ ନିଦରେ ଶୋଇଯାଇଛନ୍ତି । ଟିକିଏ ପରେ ବୁଝିବାକୁ ବିଳମ୍ବ ଲାଗିଲା ନାହିଁ ଯେ ପାଖରେ ଭଦ୍ରମହିଳା ଜଣକ କାନ୍ଦୁଛନ୍ତି । ପ୍ରଥମେ ବେଶ୍ ବିବ୍ରତ ହେଇପଡ଼ିଲି । ପରେ କିନ୍ତୁ ସମସ୍ତ ସଙ୍କୋଚ ତ୍ୟାଗ କରି ପଚାରିଲି, 'ଆପଣଙ୍କର କଣ ହେଇଛି ? ଦେହ ଭଲ ନାହିଁ ?'

ରୁମାଲ୍‌ରେ ଆଖି ପୋଛିଦେଇ ଭଦ୍ରମହିଳା ନିଜକୁ କୌଣସିମତେ ସମ୍ଭାଳି ନେଇ କହିଲେ, 'ନା, କିଛି ହେଇନି । ମୁଁ ଭଲ ଅଛି ।'

ଅତି ଧିରେ ମୁଁ ଟିକିଏ ହସିଦେଲି ।

'ଆପଣ ହସିଲେ ଯେ ?' ମୋତେ ପ୍ରଶ୍ନ କଲେ ସହଯାତ୍ରିଣୀ ।

'ଏତେଦିନ ଜାଣିଥିଲି ଯେ ସ୍ୱାଭାବିକ ଅବସ୍ଥାରେ କେହି କାନ୍ଦିପ[illegible] ମନରେ କୌଣସି ଦୁଃଖ ନଥିଲେ ଆଖିକୁ ଲୁହ ଆସେନା । ଆଜି ସେଥିପାଇଁ ଆପ[illegible]ରୁ ନୂଆ କଥା ଶୁଣି ହସମାଡ଼ିଲା ।' ଅତି ସମ୍ଭ୍ରମର ସହିତ ମୁଁ ଏତକ କହିଲି ।

ଅଳ୍ପ ଆଲୁଅ ଭିତରେ ମନେହେଲା ଭଦ୍ରମହିଳାଙ୍କ ମୁହଁରେ ଈଷତ୍ ହସର ରେଖା ଫୁଟିଉଠିଛି । କହିଲେ, 'ବୟସରେ ଛୋଟ ହେଲେ ବି ଦେଖୁଛି ଆପଣଙ୍କୁ ଫାଙ୍କିଦେବା ମୁସ୍କିଲ୍ ।'

ଏହିପରି ଭାବରେ ଧୀରେ ଧୀରେ ସେଇ ରାତିରେ ଆମ ଦୁଇଜଣଙ୍କ ମଧ୍ୟରେ ପରିଚୟ ହୋଇଥିଲା । ଦୁହେଁ ଦୁହିଁଙ୍କୁ ସୁଖ ଦୁଃଖର କାହାଣୀ ଶୁଣେଇଥିଲୁ ।

ଗଭୀର ରାତ୍ରୀରେ ଇଣ୍ଡିଆନ୍ ଏୟାର୍ ଲାଇନ୍ସର ଆତିଥ୍ୟରେ ନାଗପୁର ଏୟାରପୋର୍ଟରେ ଭେଜିଟେବଲ୍ ଚପ୍ ଖାଇବାକୁ ମୋର ଇଚ୍ଛା ହେଲାନାହିଁ । ମୋ ସହଯାତ୍ରିଣୀ ପଚାରିଲେ, 'କଣ ଖାଇବେ କୁହନ୍ତୁ ?'

ଧନ୍ୟବାଦ ଜଣାଇ କହିଲି, 'ନା, କିଛି ଖାଇବି ନାହିଁ ।'

'ନାହିଁ କାହିଁକି, କିଛି ଖାଇବାକୁ ହେବ ।'

ଆଉ ଥରେ ବାରଣ କଲି । ଏଥର ଭଦ୍ର ମହିଳା କହିଲେ, 'ମୁଁ ଆପଣଙ୍କଠୁ ବଡ଼ ନା ! ଗୁରୁଜନଙ୍କ କଥା ଶୁଣିବା ଉଚିତ । ଏଥର କୁହ, କଣ ଖାଇବ ?'

ହସି ହସି ମୁଁ ଗୋଟେ ନୁହେଁ, ଦୁଇଟା ଚକୋଲେଟ୍ ବାର୍ ଆଇସ୍କ୍ରିମ୍ ଖାଇଲି ।

କିଛିସମୟ ପରେ ଆମେ ପୁଣି ପ୍ଲେନ୍‌ରେ ଚଢ଼ିଲୁଁ । ରାତ୍ରୀର ଶେଷ ପ୍ରହରର ଭାରରେ ଯାତ୍ରୀମାନଙ୍କର ନିଦ ଆସିବାରେ ବିଳମ୍ବ ହେଲା ନାହିଁ । ଚେଇଁ ରହିଲୁ କେବଳ ଆମେ ଦୁଇଜଣ —ସହଯାତ୍ରିଣୀ ସୁବିଖ୍ୟାତ ଗାୟିକା ଶ୍ରୀମତୀ ପଦ୍ମିନୀ ପଦ୍ମନାଭନ୍ ହେଲେ ମୋର ପଦ୍ମିନୀ ଭାଉଜ ଏବଂ ମୁଁ ହେଲି ତାଙ୍କର ସାନଭାଇ ବାଚ୍ଚୁ ।

ସେଦିନ ରାତ୍ରୀର ଶେଷପ୍ରହରରେ ପଦ୍ମିନୀ ଭାଉଜ କହିଥିଲେ, 'ଯଦି କେବେ ସୁଯୋଗ ଆସିବ, ତେବେ ତୁମକୁ ମୋର ଆଖି ଲୁହର ଇତିହାସ ଶୁଣେଇବି ।'

ପଦ୍ମିନୀ ଭାଉଜଙ୍କ ଜୀବନ-ଇତିହାସ ଜାଣିବାକୁ ମୋତେ ବେଶୀଦିନ ଅପେକ୍ଷା କରିବାକୁ ପଡ଼ିନି । ମାଡ୍ରାସ୍‌ରେ କାର୍ଯ୍ୟକ୍ରମ ଶେଷ କରି ଦିଲ୍ଲୀ ଫେରିବାର ପୂର୍ବ ସନ୍ଧ୍ୟାରେ ପଦ୍ମିନୀ ଭାଉଜଠୁ ବିଦାୟ ନେବାକୁ ଯାଇ ମାଡ୍ରାସ୍ ଛାଡ଼ିବାର ଅନୁମତି ପାଇଲିନାହିଁ । ମାଉଣ୍ଟ-ରୋଜର୍ ହୋଟେଲ୍ ଛାଡ଼ି ଭାଉଜଙ୍କ ଘରକୁ ଆସିବାକୁ ହେଲା । ମୀରା ଭଜନ ଶୁଣାଉ ଶୁଣାଉ ହଠାତ୍ ଅଟକିଗଲେ ପଦ୍ମିନୀ ଭାଉଜ । ପଚାରିଲେ, 'କହିଲ ଦେଖି ବାଚ୍ଚୁ, ଏପରି ଭାବରେ ଭଗବାନଙ୍କ ନିକଟରେ ଆତ୍ମସମର୍ପଣ କରିହେବ ?'

ଜାଣିଛ ମେମ୍ ସାହେବ, ମୋଠୁ ଟିକିଏ ସମବେଦନାର ସ୍ପର୍ଶ ପାଇ ପଦ୍ମିନୀ ଭାଉଜ ତାଙ୍କ ଆଖି ଲୁହର ଇତିହାସକୁ ବଖାଣିଥିଲେ । ଶୁଣି ଆଶ୍ଚର୍ଯ୍ୟ ହୋଇଥିଲି, ମିଃ ପଦ୍ମନାଭନ୍ ମିନିଷ୍ଟର୍ ହେଇ ଦିଲ୍ଲୀ ଆସିବା ପରେ କେମିତି ଭାବରେ ଜଣେ ସିନ୍ଧୀ ଝିଅର ଘନିଷ୍ଠ ହେଇପଡ଼ିଲେ । ସେ ଦୁହିଁଙ୍କର ଘନିଷ୍ଠତା ବଢ଼ିବା ସଂଗେ ସଂଗେ ଭାଉଜଙ୍କ ପ୍ରତି ଅବହେଳା ବଢ଼ିଚାଲିଲା । ମିଃ ପଦ୍ମନାଭନ୍ ବିଦେଶ ଯିବା ସମୟରେ ସେଇ ଝିଅଟିକୁ ମଧ୍ୟ ସାଙ୍ଗରେ ନେବା ଆରମ୍ଭ କରିଦେଇଥିଲେ । ପଦ୍ମିନୀ ଭାଉଜ ସବୁକିଛି ଜାଣିପାରିଥିଲେ; ସ୍ୱାମୀଙ୍କୁ ସାବଧାନ ମଧ୍ୟ କରେଇ ଦେଉଥିଲେ । କିନ୍ତୁ ଫଳ କିଛି ହେଲାନି । ଶେଷରେ ଦିନେ ପଦ୍ମିନୀ ଭାଉଜ କହିଥିଲେ– ତୁମେ ଯଦି ଏଇ ଝିଅଟାକୁ ନେଇ ଆହୁରି ଆଗେଇବ, ମୁଁ ଦିଲ୍ଲୀର ସବୁ ଲିଡରଙ୍କୁ ତୁମର କାହାଣୀ କହିଦେବି । ମିଃ ପଦ୍ମନାଭନ୍ ସ୍ତ୍ରୀଙ୍କ କଥାରେ ସାବଧାନ ହେଇନଥିଲେ ବି ସ୍ୱାମୀଙ୍କ କୁତ୍ସାରଟନା

କରିପାରିନାହାନ୍ତି ପଦ୍ମିନୀ ଭାଉଜ । ସ୍ୱାମୀଙ୍କ ବିରୁଦ୍ଧରେ ସେ କାହାରି ପାଖରେ ନାଲିସ୍ କରିପାରିନାହାନ୍ତି ।

ପଦ୍ମିନୀ ଭାଉଜ ଧୀରେ ଧୀରେ ସ୍ୱାମୀଙ୍କଠୁ ଦୂରେଇ ଯାଇଥିଲେ । ସ୍ତ୍ରୀଙ୍କ ପ୍ରତି ସ୍ୱାମୀଙ୍କ କୌଣସ ଆଗ୍ରହ ବି ଦେଖାଗଲାନାହିଁ । ସ୍ୱାମୀ ପରିତ୍ୟକ୍ତା ଜୀବନରେ ସଂଗୀତରେ ନିଜକୁ ବୁଡ଼େଇ ରଖି ସବୁ ଦୁଃଖ ଭୁଲିଯାଇଥିଲେ ପଦ୍ମିନୀ ଭାଉଜ । ଅତୀତ ଜୀବନରେ ପ୍ରତିଷ୍ଠିତା ଗାୟିକା ନୂତନ ଭାବରେ ସୁପ୍ରତିଷ୍ଠିତା ଓ ସୁବିଖ୍ୟାତ ହୋଇ ଉଠିଥିଲେ ।

ସେଦିନ ରାତିରେ ଏୟାରପୋର୍ଟ ରେଷ୍ଟୁରାଣ୍ଟରେ ବସି ବସି ପଦ୍ମିନୀ ଭାଉଜଙ୍କର ଏଇସବୁ କାହାଣୀ ଶୁଣି ମୋର ମନେପଡୁଥିଲା ବଡ଼ ବଡ଼ ନେତାଙ୍କର ଗୁମର କଥା । ଶୁଣିଲେ ଲଜ୍ଜାରେ, ଘୃଣାରେ ମୋର ମନଟା ସାରା କେମିତି କେମିତି ହେଇଯାଏ । ମିଃ ପଦ୍ମନାଭନ୍ଙ୍କର କେତେକ ବକ୍ତୃତା ଶୁଣେ, ରିପୋର୍ଟ ଲେଖେ । କିନ୍ତୁ ତାଙ୍କୁ ଦେଖିଲାମାତ୍ରେ ମୋ ଆଖି ସାମନାରେ ଫୁଟି ଦିଶନ୍ତି ତାନପୂରା ଧରି ମୀରା ଭଜନ ଗାଉଥିବା ପଦ୍ମିନୀ ଭାଉଜ ଏବଂ ତାଙ୍କ ଦୁଇଆଖିରୁ ଝରି ପଡୁଥିବା ଦୁଇଧାର ଲୁହ ।

ଜାଣିଛ ମେମ୍ସାହେବ, ପଦ୍ମିନୀ ଭାଉଜଙ୍କୁ ଦେଖିଲେ ମନେହୁଏ ଜୀବନରେ ସେ ଦୁଃଖ ପାଉଛନ୍ତି ବୋଲି ହିଁ ଏପରି ଦରଦଭରା ସଂଗୀତ ଗାନ କରିପାରନ୍ତି । ଦେଶଟା ଯାକର ଲୋକ ପଦ୍ମିନୀ ପଦ୍ମନାଭନ୍ଙ୍କ ନାମ ଶୁଣିଥାନ୍ତି, ଶୁଣିଥାନ୍ତି ତାଙ୍କର ସଂଗୀତ, କିନ୍ତୁ କାହିଁକି ଏବଂ କିପରି ଭାବରେ ଏପରି ଦରଦଭରା ସଂଗୀତ ଗାନ କରିଥାନ୍ତି, ସେଇ ଖବର କେହି ଜାଣନ୍ତି ନାହିଁ । ମନର ଏକ ଦୁର୍ବଳ ମୁହୂର୍ତ୍ତରେ ଟିକିଏ ସମବେଦନାର ସ୍ପର୍ଶ ପାଇ ସେ ତାଙ୍କର ଜୀବନ କାହାଣୀ ବଖାଣି ଥିଲେ । ତୁମେ ଆସିଲେ ତୁମକୁ ଥରେ ମାଡ୍ରାସ ନେଇଯିବି । ଦେଖିବ ଛୋଟ ଭଉଣୀ ଭାବରେ ଆଦର ସମ୍ମାନ କରି ସେ କିପରି ଭାବରେ ତୁମକୁ ବରଣ କରିନେବେ ଘରକୁ ।

ବଡ଼ ଚିଠି ଲେଖ । ସ୍ନେହ ଜାଣିବ ।

— ତୁମରି ବାଚ୍ଚୁ

ମେମ୍ସାହେବ,

ଅସହ୍ୟ ଗରମ ପରେ ପରେ ଦିଲ୍ଲୀରେ ଏଥର ଆସର ଜମେଇ ବର୍ଷା ଓହ୍ଲେଇ ଆସିଛି । ଆକାଶ ମେଘାଚ୍ଛନ୍ନ ହେଲେ କ'ଣ ହେଲା, ଚାରିଦିଗରେ ଚମତ୍କାର ସବୁଜିମାର ମେଳା ବସିଛି, ଶୀର୍ଣ୍ଣା-ରୁଗ୍ଣା କ୍ଷୀଣଧାରା ଯମୁନା ବର୍ଷାର ସ୍ପର୍ଶରେ ଅଠରବୟସୀ (ଅଷ୍ଟାଦଶୀ) ଟଳମଟଳ ହେଇଯାଇଛି । ଚତୁର୍ଦ୍ଦିଗର ରୁକ୍ଷତାକୁ ବିଦାୟ ଦେଇ ସଦ୍ୟସ୍ନାତା ପ୍ରକୃତି ଯେତିକିବେଳେ ଆତ୍ମପ୍ରକାଶ କରିଛି, ଠିକ୍ ସେତିକିବେଳେ ତୁମର ମିଠା ହାତର

ସୁନ୍ଦର ଚିଠିଖଣ୍ଡିକ ମୋ ହାତରେ ଆସି ପହଞ୍ଚିଛି ଏବଂ ମୋ ଜୀବନର ସମସ୍ତ ରୁକ୍ଷତାକୁ ଦୂରକୁ ଠେଲିଦେଇ ମୋ ମନକୁ ବି ସବୁଜିମାର ଆବରଣରେ ଢାଙ୍କି ଦେଇଛି ।

ସେଦିନ ଦି'ପହରେ ସବୁ ବହି କାଗଜପତ୍ରକୁ ଆଡ଼େଇଦେଇ କେବଳ ତୁମରି ଚିଠିଟାକୁହିଁ ପଢ଼ିଲି । ମନେହେଲା ଏମିତି ମିଠା, ଏମିତି ସୁନ୍ଦର ଚିଠି ତମେ ଆଗେ କେବେ ଲେଖିନ ।

....ହେମା, ବେହାଗ୍ ରାଗର ରବିଶଙ୍କରଙ୍କ ଲଙ୍ଗ୍ ପ୍ଲେଇଙ୍ଗ୍‌କୁ ଚଲେଇଦେଇ ଅଳ୍ପ କେତେମିନିଟ୍ ଭିତରେ ମୁଁ ଶୋଇପଡ଼ିଲି । ଟାଇପ୍‌ରାଇଟ୍‌ରଟା ଖୋଲା ଏବଂ କାଗଜପତ୍ରଗୁଡ଼ିକ ବିଛେଇ ହେଇପଡ଼ିଛି । ଏମିତି କି ସୋଫା ଉପରେ ସୁଟ୍ ଟାଇ ଖୋଲି ଦେଇ ଆଉ ତାକୁ ସାଇତି ରଖିପାରିନି । ଭାବିଥିଲି ସଂଗୀତଟା ଶୁଣିବା ପରେ ସବୁ ଠିକ୍ କରି ରଖି ତୁମର ସେଠିକି ଯିବି । ମୋର ଯିବା ସମୟଟା ପାର ହେଇଯିବା ପରେ ତୁମେ ଯେ ଟେଲିଫୋନ୍ କରି ନୋ-ରିପ୍ଲାଇ ପାଇଛ, ପରେ ମଥୁରାକୁ ପଚାରି ବୁଝିଛ ମୁଁ ଶୋଇଯାଇଛି ସେସବୁ ମୁଁ କିଛି ଜାଣିନାହିଁ । ତାପରେ ତୁମେ ଯେ ମୋର ସେଠିକୁ ଆସି ଘରଦ୍ୱାର ଠିକ୍‌ଠାକ କରିଛ, ରଫ୍ କପି ଦେଖି ଉଇକ୍ଲି ଡାଏରୀର ବାକିତକ ଟାଇପ୍ କରିଦେଇଛ, ଅର୍ଡ଼ର କରି ଦୁହିଁଙ୍କ ପାଇଁ ଖାଇବା ମଗେଇଛ, ସେସବୁ ବି ମୁଁ କିଛି ଜାଣିପାରିନି । ତାପରେ ତୁମେ ଯେତେବେଳେ ମୋରି ପାଖରେ ବସି ଗୀତ ଗାଉଥିଲ, ସେତେବେଳେ ନିଦଟା ଟିକିଏ ପତଳା ହେଇଗଲା ସିନା ଭାଙ୍ଗିଲା ନାହିଁ । କଡ଼ ଲେଉଟାଇ ଶୋଇଲା ବେଳେ ମନେହେଲା ରବିଶଙ୍କରଙ୍କ ବାଜଣା ଶେଷ ହେଇ ନୂଆ ରେକର୍ଡ଼ ବାଜୁଛି ।

ଏହାପରେ ତୁମେ ପୁଣି ଗାଇଲ- 'ଏଥର ଉଜାଡ଼ି ଦେଇ ଯାଅହେ ମୋର ଯାହା ଯାହା ସମ୍ବଳ, ଫେରିଚାହଁ ଫେରିଚାହଁ ଫେରିଚାହଁ ଆଗୋ ଚଞ୍ଚଳ ।' ଆଖି ଖୋଲିବାରୁ ତୁମକୁ ଦେଖି ହାତକୁ ତମର ଜାବୁଡ଼ି ଧରିଲି ।

ତୁମେ ରାଗ କରି ହାତଟା ତମର ଛଡ଼େଇ ନେଲ; କହିଲ, 'ହାତ ଧରନା କହୁଛି ।'

ମୁଁ ଟିକିଏ ଆଶ୍ଚର୍ଯ୍ୟ ହେଇ ପ୍ରଶ୍ନ କଲି, 'ଏଣେ ଗୀତ ଗାଉଛ— ଏଥର ଉଜାଡ଼ି ଦେଇଯାଅ ହେ ମୋର ଯାହା ଯାହା ସମ୍ବଳ । ଆଉ କହୁଛ କଣ ନା, ହାତ ଧରନା; କଥା କଣ କୁହ ତ ? ହଠାତ୍ ଏ ଧର୍ମଘଟ କାହିଁକି ?'

ଛାତି ଉପରେ ପଡ଼ିଥିବା ଲମ୍ବା ବେଣୀଟିକୁ ପିଠି ଆଡ଼କୁ ଛାଟିଦେଇ, ମୁହଁକୁ ବଙ୍କେଇ କହିଲ, 'ତୁମେ ବି ତ ଆଜିକାଲି ଅନଶନ ଆରମ୍ଭ କରିଛ । ସକାଳୁ ବାହାରି ଯାଇ ସାରାଦିନ ହୁ ହୁ ହେଇ ଘୂରିବୁଲୁଛ, ଖାଉ ନାହିଁ ଆଉ ଶେଷରେ ହାଲିଆ ହେଇ ଶୋଇପଡୁଛ, ଆଉ' —

ମୁଁ ଚଟ୍‌କିନା ଉଠିବସି କହିଲି—

'ଗୋପନେ ଦେଖିଛି ତୁମରି ବ୍ୟାକୁଳ ନୟନେ ଭାବର ଖେଳ

ଉତ୍ତଳ ଅଞ୍ଚଳ, ଆଲୁଳିତ କେଶେ ଦେଖିଛି ଝଡ଼ର ବେଳ ।

ତାପରେ କଣ ହେଲା ଜାଣିଛ ମେମ୍ ସାହେବ ? ଦୁହେଁ ଆମେ ଖାଇବସି ବହୁତ ହୋହଲ୍ଲା କରୁଥିଲେ । କଣ ଗୋଟେ ତୁମ ପାଟିରେ ଗୁଞ୍ଜିଦବାକୁ ଯିବାବେଳେ ଗିଲାସଟାରେ ହାତ ବାଜି ତଳେ ପଡ଼ିଯିବାରୁ ଭାଙ୍ଗିଗଲା ଏବଂ ଆମେ ଦୁହେଁ ଏକସଙ୍ଗେ ଚିତ୍କାର କରିଉଠିଲେ ।

ସେଇ ଚିତ୍କାରରେ ହିଁ ନିଦଟା ମୋର ଭାଙ୍ଗିଗଲା । ବେଶ୍ କିଛିକ୍ଷଣ ପରେ ଉପଲବ୍ଧି କଲି– ତୁମେ ତ ପାଖରେ ନାହଁ, ବୁଝିଗଲି ଯେ ସ୍ୱପ୍ନ ଦେଖୁଥିଲି ।...ଆଉ କେତେ ଦିନ ମାୟାବିନୀ ହରିଣୀ ପରି ଗହନ ସ୍ୱପନ-ସଂଚାରିଣୀ ହୋଇ ରହିଥିବ ମେମ୍‌ସାହେବ ?

ଯା ଭିତରେ ନିଦ ଭାଙ୍ଗିଯିବାରୁ ହାତଘଡ଼ିକୁ ଅନେଇ ଦେଖିଲି ଆଠଟା ବାଜିବାକୁ ଆଉ ମାତ୍ର ପନ୍ଦର ମିନିଟ୍ ବାକି ଅଛି । ପାଞ୍ଚ ସାତ ମିନିଟ୍ ଭିତରେ ରେଡ଼ି ହୋଇ ଦୌଡ଼ିଗଲି ମିସ୍ ଡୋଭର୍‌ଙ୍କ ଡିନର ଖାଇବାକୁ । ତିରିଶବର୍ଷ ପୂର୍ବେ ସେଇ ଦିନରେ ମିସ୍ ଡୋଭର୍ ତାଙ୍କର ରାଜନୈତିକ ଜୀବନ ଆରମ୍ଭ କରିଥିଲେ ଏବଂ ପନ୍ଦରବର୍ଷ ପୂର୍ବେ ରାଜନୀତିକୁ ତ୍ୟାଗ କରି ସମାଜସେବା କାର୍ଯ୍ୟ ଆରମ୍ଭ କଲେ । କେତେ ବର୍ଷ ହେଲା ସେଇ ଦିନଟିରେ ଚିର କୁମାରୀ ମିସ୍ ଡୋଭର୍‌ଙ୍କ ମୁଁ ଜଣେ ନିୟମିତ ଅତିଥି ।

ମିସ୍ ଡୋଭର୍‌ଙ୍କ ଘରକୁ ଯାଇ ଦେଖିଲି ଶ୍ରୀନିବାସମ୍, ମୌଳିକ୍, ମିସ୍ ଘୋଷ ଏବଂ ଆଉ ଦୁଇତିନିଜଣ ହାଜର ହୋଇଯାଇଛନ୍ତି । ଷାଠିଏ ପରେ ମିସ୍ ଡୋଭର୍‌ଙ୍କ ବୟସ ହେଲେ ବି ଆମ ସମସ୍ତଙ୍କ ସାଙ୍ଗରେ ବେଶ୍ ହସିଖେଳି ଆନନ୍ଦ ଏବଂ ସନ୍ତୋଷର ସହିତ ସିକ୍ସଟିନ୍ କୋର୍ସ ଡିନର୍ ଖୁଆଇଲେ । ଶେଷରେ ଜଣ ଜଣ କରି ଅତିଥି ବିଦାୟ ନେବା ଆରମ୍ଭ କରିବାରୁ ମୁଁ ବି ମିସ୍ ଡୋଭର୍‌ଙ୍କ ନିକଟକୁ ଗଲି ବିଦାୟ ନେବାକୁ, ମାତ୍ର ଅନୁମତି ପାଇଲି ନାହିଁ । କହିଲେ, 'ୟଙ୍ଗ୍ ଫ୍ରେଣ୍ଡ୍, ଟିକିଏ ବସ, କଥା ଅଛି ।'

ସମସ୍ତଙ୍କୁ ବିଦାୟ ଦେଇ ଡ୍ରଇଂରୁମ୍‌ର କୋଣକୁ ଫେରିଆସିଲେ ମିସ୍ ଡୋଭର୍ । ହସି ହସି ପଚାରିଲେ, 'କ'ଣ କିଛି ହଜେଇଛ ?'

ମୁଁ ଭାବିପାରିଲି ନାହିଁ କଣ ହଜେଇଛି । କହିଲି, 'ଠିକ୍ ବୁଝିପାରୁନି ତ ।'

ହସି ହସି ମୋ ପର୍ଶଟିକୁ ବଢ଼େଇ ଦଉ ଦଉ କହିଲେ, 'ଖାଇସାରିବା ପରେ ନଇଁକିନା ଟେବୁଲ୍‌ତଳେ ପ୍ଲେଟ୍ ରଖୁ ରଖୁ ବୋଧେ ତୁମର ଏଇଟା ଖସିପଡ଼ିଛି ।'

'ହଁ ହଁ ତା' ହେଇପାରିଥାଏ ।'

ଅଶେଷ ଧନ୍ୟବାଦ ଜଣାଇ ଉଠି ଠିଆହେଲାରୁ କହିଲେ, 'ତୁମେ ତ ବଡ଼ ସ୍ୱାର୍ଥପର । ପର୍ଶ୍‌ଟା ପାଇବା ସଙ୍ଗେ ସଙ୍ଗେ ଚାଲିଲ ?'

ମନେହେଲା, ମୋ ଆଡ଼ିକି ଟିକିଏ ଚାହିଁ ଚାପା ହସ ହସିଲେ । 'ବସ ବହୁତ କଥା ଅଛି ।' ବୋଲି ବେଶ୍ ଶାସନୀ ସ୍ୱରରେ କହିଲେ ଏଥର । ହସି ହସି ପଚାରିଲେ, 'ପର୍ଶ ଭିତରେ ପ୍ରିଭି-ପର୍ଶକୁ ଦେଖିଲି । କିଏ ସେଇ ଜଣକ ?'

ପ୍ରଥମେ ମୁଁ କିଛି ବୁଝି ନପାରି ଟିକିଏ ବିସ୍ମୟ ହୋଇ ତାଙ୍କ ଆଡ଼କୁ ଅନେଇ ରହିବାରୁ ମିସ୍ ଡୋଭର୍ ଏକ ଦାବନ୍ ଦେଇ କହିଲେ, 'ତୁମ ବ୍ୟାଗ୍ ଭିତରେ ଯେଉଁ ଝିଅଟିର ଫଟୋ ଦେଖିଲି, ସେ କିଏ ?'

ମୁଁ ଟିକିଏ ଲଜ୍ଜିତ ହୋଇ ମୁଣ୍ଡ ତଳକୁ କରି କହିଲି, 'ସେ ହେଉଛନ୍ତି ତାପସୀ-ମିସ୍ ତାପସୀ ସେନ୍।'

'ତୁମେ ତାକୁ ଭଲ ପାଅ ?'

ମୁଁ କୌଣସି ଜବାବ ନଦେଇ ଚୁପ୍‌ଚାପ୍ ମୁହଁ ତଳକୁ କରି ଠିଆହେଲି।

ଏଥର ପ୍ରଶ୍ନ ଆସିଲା, 'ତୁମର ଆଉ ତାପସୀର ବାହାଘର ହବତ ?'

ଆଜିପର୍ଯ୍ୟନ୍ତ କେହି ଏପରି ସିଧାସଳଖ ଭାବେ ଏଇ ପ୍ରଶ୍ନ ପଚାରିନାହାନ୍ତି ବୋଲି ମୁଁ ଆହୁରି ଲଜ୍ଜାବୋଧ କଲି। ଶେଷରେ ଜଣାଇଲି, 'ତାପସୀ ବିଲାତରୁ ଫେରିଲେ ବୋଧହୁଏ ଆଉ ଡେରି ହେବନାହିଁ।'

ମୋତେ ଧନ୍ୟବାଦ ଜଣାଇଲେ ମିସ୍ ଡୋଭର୍। କିନ୍ତୁ ମୁହୂର୍ତ୍ତକ ମଧ୍ୟରେ ତାଙ୍କର ସେଇ ଉଜ୍ଜ୍ୱଳ ସୁନ୍ଦର ହସହସ ମୁହଁଟିରେ ସତେ ଯେମିତି ଅନ୍ଧକାର ଭରିଗଲା। କଣ ଯେମିତି କହିବାକୁ ଯାଉ ଯାଉ ଅଟକିଗଲେ। କେବଳ ଏକ ବିରାଟ ଚାପା ଦୀର୍ଘ ନିଃଶ୍ୱାସ ଛାଡ଼ିଲେ।

'କଣ କହିବାକୁ ଚାହୁଁଥିଲେ ଯେ ?' ମୁଁ ଯଦିଓ ପ୍ରଶ୍ନ କଲି, ଉତ୍ତର ପାଇଲି ନାହିଁ।

କିଛିକ୍ଷଣ ପାଇଁ ଚୁପ୍‌ଚାପ୍ ରହିବା ପରେ ନିଜ ମନକୁ ମନ ମିସ୍ ଡୋଭର୍ କହିଉଠିଲେ, 'ରାଜନୀତିର ଖେଳରେ ମଣିଷ ଅମଣିଷ ହେଇଯାଏ। ପ୍ରେମ, ଭଲପାଇବା ବି ତା'ର ଚରିତ୍ରରୁ ହଜିଯାଏ।'

ସେଦିନ ରାତିଟା ଆହୁରି ଗଭୀର ହେବା ସଙ୍ଗେ ସଙ୍ଗେ ଧୀରେ ଧୀରେ ମିସ୍ ଡୋଭର୍ ତାଙ୍କର ଆତ୍ମଜୀବନୀର ଅତୀତ ଅଧ୍ୟାୟଟି ମେଲେଇ ଧରିଲେ ମୋ ଆଗରେ।

ଆଜିଠୁ ତିରିଶ ବର୍ଷ ପୂର୍ବେ ଗାନ୍ଧିଜୀଙ୍କ ଆହ୍ୱାନରେ ରାଓଲପିଣ୍ଡିର ରାୟ ବାହାଦୂର ପି.ଏଲ୍. ଡୋଭର୍‌ଙ୍କ ଏକମାତ୍ର କନ୍ୟା ଯମୁନା ଡୋଭର୍ ୟୁନିଭର୍‌ସିଟିର କ୍ଲାସ୍ ଛାଡ଼ି ସ୍ୱଦେଶୀ ଆନ୍ଦୋଳନରେ ଯୋଗ ଦେଇଥିଲେ। କିଛିକାଳ ପରେ ସମସ୍ତ ଐଶ୍ୱର୍ଯ୍ୟକୁ ପଛରେ ପକେଇ ରାଓଲପିଣ୍ଡି ତ୍ୟାଗ କରି ଚାଲିଆସିଲେ ଲାହୋରକୁ। ବର୍ଷ ପାଞ୍ଚଟା ଭିତରେ ଭାରତବର୍ଷର ରାଜନୈତିକ ଦୁନିଆରେ ପ୍ରାୟ ସର୍ବତ୍ର ଶ୍ରୀମତୀ ଡୋଭର୍‌ଙ୍କ ନାମ ବିଛାଡ଼ି ହେଇଗଲା। ବୟାଳିଶର ଅଗ୍ନିବର୍ଷୀ ଦିନଗୁଡ଼ିକରେ ଏଇ ଝିଅଟି ଇଂରେଜ ସରକାରଙ୍କ ପାଇଁ ବିଭୀଷିକା ହୋଇଉଠିଲା।

ଅସଂଖ୍ୟ ମଣିଷଙ୍କ ଘନିଷ୍ଠ ସାନ୍ନିଧ୍ୟରେ ମିସ୍ ଡୋଭର୍‌ଙ୍କୁ ଦିନ ବିତେଇବାକୁ ପଡ଼େ। ଏଇ ଘନିଷ୍ଠତା ମାଧ୍ୟମରେ ହିଁ ସହକର୍ମୀ ତଥା ଶୁଭାକାଂକ୍ଷୀ ମହାଜନଙ୍କ ସହିତ

ଗଢ଼ିଉଠିଲା ନୂତନ ବନ୍ଧନ । ସୁଖରେ ଦୁଃଖରେ, ସମସ୍ୟାରେ, ସଙ୍କଟରେ ଦୁହିଁଙ୍କର ସମ୍ବନ୍ଧ ଗଭୀରରୁ ଗଭୀରତର ହେବାକୁ ଲାଗିଲା । କ୍ରିପ୍‌ସ୍ ମିଶନ୍ ଭାରତକୁ ଆସିବାମାତ୍ରେ ଦୁହେଁ ଜେଲ୍‌ରୁ ମୁକୁଳିଲେ । ଦେଶ ସ୍ୱାଧୀନ ହେବାର ପ୍ରାକ୍ କାଳରେ ଦୁହେଁ କ୍ଳାନ୍ତ ହୋଇପଡ଼ିଥିଲେ, ସ୍ୱପ୍ନ ଦେଖୁଥିଲେ ଘର ସଂସାରର ।

ମୋ ଆଡ଼କୁ ଚାହିଁ ମିସ୍ ଡୋଭର୍ କହିଲେ, 'ବାଚ୍ଛୁ, ଯେଉଁ ମଣିଷ ଭଲ ପାଉଥିବା ଲୋକର ଉନ୍ନତି ସହ୍ୟ କରିପାରେ ନାହିଁ, ତାର ମଙ୍ଗଳ କାମନା କରିପାରେନା, ତାର କଣ ମନୁଷ୍ୟତ୍ୱ ଅଛି ବୋଲି କୁହାଯାଇପାରିବ ?'

ମୁଁ କୌଣସି ଉତ୍ତର ଦେଲିନାହିଁ; ମିସ୍ ଡୋଭର୍ ନିଜ ପ୍ରଶ୍ନର ଉତ୍ତର ନିଜେ ଦେଲେ । କହିଲେ, 'ବେଶିଦିନ ରାଜନୀତି କଲେ ଅଧିକାଂଶ ଲୋକଙ୍କ ଭିତରେ ସ୍ୱାର୍ଥପରତା ଅତିମାତ୍ରାରେ ଦେଖାଦିଏ । ସେଇଥିପାଇଁ ମହାଜନକୁ ମୁକ୍ତି ଦେଲି ଏବଂ ନିଜେ ମୁକ୍ତ ହେଲି ରାଜନୀତିରୁ ।'

ରାଜଧାନୀ ଦିଲ୍ଲୀର ସମାଜ ଜୀବନର ଉଜ୍ଜ୍ୱଳ ତାରକା ସର୍ବଜନ ଶ୍ରଦ୍ଧେୟା ମିସ୍ ଯମୁନା ଡୋଭର୍ ଜନ୍ମ ହୋଇଥିଲେ ଐଶ୍ୱର୍ଯ୍ୟର କୋଳରେ । ରାଜନୈତିକ ଜୀବନରେ ସୁଖ୍ୟାତି ଲାଭ କରିଥିଲେ । ସମାଜ ସେବିକା ରୂପରେ ସାରା ଦେଶରେ ସମ୍ମାନନୀୟା ହୋଇପାରିଥିଲେ । ତଥାପି ନିଜର ବ୍ୟକ୍ତିଗତ ଜୀବନରେ ପୂର୍ଣ୍ଣତା ପାଇପାରିନଥିବା ଜାଣି ମୋ ମନଟା ବିଷଣ୍ଣ ହୋଇଉଠିଲା । ଆପାତ ଦୃଷ୍ଟିରେ ଆମେ ଯେଉଁମାନଙ୍କୁ ଜୀବନରେ ପ୍ରତିଷ୍ଠିତ ଦେଖୁଁ, ହସି ହସି ବକ୍ତୃତା ଦଉଥାନ୍ତି, ଦୁନିଆର ସର୍ବତ୍ର ଘୂରି ଦେଖିଲେ ଯେ ସେଇମାନଙ୍କ ଜୀବନରେ ଏଭଳି ବ୍ୟର୍ଥତା ଥାଇପାରେ– ତାହା ମିସ୍ ଡୋଭର୍‌ଙ୍କ ଆତ୍ମଜୀବନୀ ନ ଜାଣିଲେ ବିଶ୍ୱାସ କରିବା କଷ୍ଟ ।

ଆଚ୍ଛା ମେମ୍ ସାହେବ, ଯେଉଁମାନେ ଜୀବନରେ ପ୍ରତିଷ୍ଠା ପାଇଥାନ୍ତି ସେମାନଙ୍କର ବ୍ୟକ୍ତିଗତ ଜୀବନରେ କିଛି ନା କିଛି ଦୁଃଖ ରହିଯାଏ କାହିଁକି କୁହ ତ ?

— ତୁମରି ବାଚ୍ଛୁ

ମେମ୍ ସାହେବ୍,

ତୁମର ଅସୁସ୍ଥତାର ଖବର ପାଇ ବହୁତ ଚିନ୍ତିତ । ମୁଁ କେତେ ସପ୍ତାହ ପାଇଁ କାଲି ସକାଳେ ଆଫଗାନିସ୍ଥାନ ଯାଉଛି । ତୁମେ ଏଇ ଚିଠି ପାଇବା ମାତ୍ରେ ହୋଟେଲ୍ ଆରିୟାନା ଠିକଣାରେ ତୁମର ଦେହର ଖବର ଜଣାଇବ । ମୁଁ କିନ୍ତୁ ଅତି ଉତ୍କଣ୍ଠାର ସହିତ କାଲି ସକାଳେ ହିନ୍ଦୁକୁଶର କୋଳର ଆଦି ଆର୍ଯ୍ୟଭୂମି ଅଭିମୁଖେ ବାହାରିବି ।

ଏଠି ମୋର ଦିନ କିନ୍ତୁ ବେଶ୍ କଟିଯାଉଛି । ତୁମ ଭାଷାରେ ବଣର ପକ୍ଷୀ ପରିକା ଘୂରି ଘୂରି କେତେ ମଣିଷଙ୍କୁ ଦେଖୁଛି, କେତେ କଥା ଜାଣୁଛି, କେତେ କଥା

ଶୁଣୁଛି । ରାଜଧାନୀ ଦିଲ୍ଲୀର ବିରାଟ ରଙ୍ଗମଞ୍ଚରେ ମୁଁ ନିର୍ବାକ୍ ଅଥବା 'ମୃତ ସୈନିକ'ର ଅଭିନୟ କରିଚାଲିଛି, ସେଥିପାଇଁ କିନ୍ତୁ ଅନ୍ୟାନ୍ୟ ଅଭିନେତା ଅଭିନେତ୍ରୀମାନଙ୍କର ଅଭିନୟ ଦେଖିବାରେ ମୋର ବିନ୍ଦୁ ମାତ୍ର ଅସୁବିଧା ହଉନି । ଗୋଟିଏ ଅଭିନୟ ଦେଖି କିଛିଦିନ ବିଶ୍ରାମ କରୁ ନକରୁଣୁ ପରବର୍ତ୍ତୀ ଅଭିନୟ ଦେଖିବାକୁ ନିମନ୍ତ୍ରଣ ଆସିଯାଏ– କୌଣସି ଏକ ଅଦୃଶ୍ୟ ହାତର ଖେଳ ପରି ।

କିଛିଦିନ ପୂର୍ବେ କନକ ଭାଇ ଓ କଲ୍ୟାଣୀ ଭାଉଜ ଝିଅ ଝୁକୁ ଏବଂ ନୂଆ ଜ୍ୱାଇଁ ଅମିୟକୁ ନେଇ ବୁଲିବାକୁ ଆସିଥିଲେ । ଦିନେ କୁତବ୍‌ମିନାର୍‌ରୁ ଲାଲକିଲ୍ଲା ଯାଏ ବୁଲେଇ ଦେଲି, ମତିମହଲ୍‌ରେ ଚିକେନ୍ ରୋଷ୍ଟ ଖୁଆଇଲି ଏବଂ ଶେଷଆଡ଼କୁ ପ୍ରତିଦିନ ସଂଧ୍ୟାରେ କନଟ୍‌ପ୍ଲେସ୍‌ରେ ଘୂରିବା ଆରମ୍ଭ କଲି । ସେମାନେ ଦିଲ୍ଲୀ ଛାଡ଼ିବାର ପୂର୍ବ ସଂଧ୍ୟାରେ ଆମେ ସଦଳବଳେ ଦିଲ୍ଲୀର ବିଖ୍ୟାତ ତ୍ରିବେଣୀ ଗୋଷ୍ଠୀର 'ସ୍ୱାମୀଜୀ' ଦେଖିବାକୁ ଗଲୁ ।

ହଲ୍‌ରେ ଯାଇ ବସୁ ବସୁ କିଏ ଯେମିତି ମୋତେ ଚିମୁଟିଲା ପରି ମନେହେଲା । ଅନେଇ ଦେଖିଲି ଘଟକ ଭାଉଜ । ଥିଏଟର୍ ଆରମ୍ଭ ହେବା ସଙ୍ଗେ ସଙ୍ଗେ ଘଟକ ଭାଉଜ ପଛଆଡୁ ମୋ ପିଠିରେ ହାମୁଡ଼ି ପଡ଼ି ରନିଙ୍ଗ୍ କମେଣ୍ଟରୀ ଦବା ଆରମ୍ଭ କରିଦେଲେ । ମୁଁ ଥରେ ଦୁଇଥର ଇସାରା କରି ଚୁପ୍ ରହିବାକୁ କହିଲେ ବି ଘଟକ ଭାଉଜଙ୍କ ଉତ୍ସାହ ଟିକିଏ ବି କମିଲା ନାହିଁ - 'ଜାଣିଚୁ ବାବୁ, ଏଇ ଯିଏ ରାମକୃଷ୍ଣ ପାର୍ଟ କରୁଛି, ସେ ହିଁ ହେଉଛନ୍ତି ଆମର ମିସେସ୍ କେତକୀ ଚକ୍ରବର୍ତ୍ତୀଙ୍କ ହଜବେଣ୍ଡ କର୍ଣ୍ଣେଲ୍ ଚକ୍ରବର୍ତ୍ତୀ ?' ଟିକିଏ ଚୁପ୍ ହେଇ ପୁଣି ତାଙ୍କର ରନିଙ୍ଗ୍ କମେଣ୍ଟାରୀ ଧାରା ବିବରଣୀ ଆରମ୍ଭ ହେଲା- 'ଦେଖ୍ ବାବୁ ! ଦକ୍ଷିଣେଶ୍ୱର ମନ୍ଦିର ସିନ୍‌ରେ ମାୟାକୁ ଦେଖିବାକୁ ପାଇବୁ ।'

ମୁଁ ପଛକୁ ମୁହଁ ବୁଲେଇ ଫିସ୍ ଫିସ୍ କିନା କହିଲି, 'ଆଃ ଭାଉଜ । ସୋ' ପରେ ତୁମର ପୂରା ସ୍କ୍ରିପ୍ଟ୍ ପଢ଼ିନେବି; ଏବେ କିନ୍ତୁ ଏଇ ରନିଙ୍ଗ୍ କମେଣ୍ଟାରୀ ବନ୍ଦ କର ।' ଆଖିରେ ଇସାରା କରି କହିଲି, 'ଲୋକେ କଣ କହିବେ ?'

ଅଙ୍ଗାର ଶତଧୌତେନ ମଳିନତ୍ୱ ଯାଏନା ଯେପରି ଚିରନ୍ତନ ସତ୍ୟ, ବକର ବକର ହେବା ଘଟକ ଭାଉଜଙ୍କ ସେପରି ବିଶେଷତ୍ୱ । ମୋର ବାରମ୍ବାର ବାରଣ ସତ୍ତ୍ୱେ ଘଟକ ଭାଉଜଙ୍କର ରନିଙ୍ଗ୍ କମେଣ୍ଟାରୀ ରେଡ଼ିଓ ସିଲୋନ୍ ପରିକା ଅନବରତ ଚାଲୁ ରହିଲା ।

କଲ୍ୟାଣୀ ଭାଉଜ ପଚାରିଲେ, 'କିଏ ସେ ମ ?'

ମୁଁ କହିଲି, 'ଗେଜେଟ୍ ଅଫ୍ ଦି କ୍ୟାପିଟେଲ୍ ଅଫ୍ ଇଣ୍ଡିଆ, ରାଜଧାନୀ ଦିଲ୍ଲୀର ଗେଜେଟ୍ !'

କେବଳ କଲ୍ୟାଣୀ ଭାଉଜ ନୁହଁନ୍ତି, କନକଭାଇ, ଖୁକୁ ଆଉ ନୂଆ ଜୋଇଁ ଅମିୟ ମଧ୍ୟ ହସିଉଠିଲେ । ମୁଁ ଟିକିଏ ଲଜ୍ଜିତ ହେଲି । ମୁହେଁ ମୁହେଁ ଘଟକ ଭାଉଜ ସମ୍ପର୍କରେ ଏପରି ଟିପ୍ପଣୀ ଦେବାଟା ଠିକ୍ ହେଲାନାହିଁ । କିନ୍ତୁ ମନେ ମନେ ଭାବି ଦେଖିଲି ଘଟକ ଭାଉଜଙ୍କର ଆଉ ତ କୌଣସି ପରିଚୟ ଜାଣିନି ।

କିଛିସମୟ ପରେ ଷ୍ଟେଜ୍ ଉପରକୁ ସିଷ୍ଟର୍ ନିବେଦିତା ଆସିଲେ । ଘଟକ ଭାଉଜ ବେଶ୍ ଉତ୍ତେଜିତ ଭାବେ ମୋତେ କେଞ୍ଚିଦେଲେ । କାନେ କାନେ କହିଲେ, 'ଇଏ ହଉଚି ପ୍ରିୟା ବୋଷ୍ । ଚିହ୍ନିଛ ନା ଯାକୁ ?'

ଉତ୍ତର ଦେଲି - 'ନା ।'

'ଅପଦାର୍ଥ କୋଉଠିକାର । ବାଛୁ, ତୋତେ କାହିଁକି ଏ ଯାଏଁ ଖବରକାଗଜରୁ ତଡ଼ିଦିଆଯାଇନି କହ ତ ? ଦିଲ୍ଲୀରେ ଥାଇ ପ୍ରିୟା ବୋଷକୁ ଚିହ୍ନିନୁ !'

ମୁଁ ଦିଲ୍ଲୀରେ ଥାଇ ଯଶସ୍ୱିନୀ ମଞ୍ଚାଭିନେତ୍ରୀ ପ୍ରିୟା ବୋଷକୁ ଚିହ୍ନିନି ବୋଲି ରାଗ ଆଉ ଦୁଃଖରେ ଘଟକ ଭାଉଜ ସମ୍ପୂର୍ଣ୍ଣ ଭାଙ୍ଗିପଡ଼ିଲେ । ରନିଙ୍ଗ୍ କମେଣ୍ଟାରୀ ବନ୍ଦ ହୋଇଗଲା ।

ଅଢ଼େଇଘଣ୍ଟା ପରେ 'ସ୍ୱାମୀଜୀ' ଅଭିନୟ ଶେଷ ହେଲା । ହଲ୍ ଭିତରେ ଚାରିଆଡ଼ର ଆଲୁଅ ଜଳିଉଠିଲା । ଅନ୍ୟାନ୍ୟ ସଭିଙ୍କ ପରି ଆମେ ବି ଉଠି ଠିଆ ହେଲୁ । ବାହାରିବା ପାଇଁ ମୁଁ କଲ୍ୟାଣୀ ଭାଉଜଙ୍କ ପଛେ ପଛେ ଚାଲୁ ଚାଲୁ ଆଗଉଥିବା ବେଳେ ଘଟକ ଭାଉଜ ବେଶ୍ ଆଦରରେ ମୋ କାନଟିକୁ ମୋଡ଼ିଦେଲେ । ଖୁକୁ ଓ ଅମିୟ ମୁହଁରେ ରୁମାଲ୍ ଦେଇ ହସକୁ ଚାପିଲେ ।

ମୁଁ ପୋଷା ବିରାଡ଼ି ପରିକା ମିଆଉଁ ମିଆଉଁ କରି କୌଣସିମତେ କହି ପକେଇଲି, 'ଭାଉଜ ଥାଉ ଥାଉ, ଏତେ ଗେଲ କରନା ।'

ଶାମ୍ପୁକରା କେଶ ଗୁଚ୍ଛକୁ ମୁହଁରୁ ଆଡ଼େଇଦେଇ ମୋତେ ଘଟକ ଭାଉଜ କହିଲେ, 'ମାଇଁ ଡିଅର ବ୍ୟାଚଲର୍, କମ୍ ଟୁମୋରୋ ଇଭିନିଙ୍ଗ୍ । ଆଇ ଉଇଲ୍ ଗିଭ୍ ୟୁ ଗୁଡ୍ ଫୁଡ୍ ଏଣ୍ଡ ଗୁଡ୍ ଷ୍ଟୋରି, ଆଇ ମିନ୍ ଟପ୍ ଏକ୍ସକ୍ଲୁସିଭ୍ ଷ୍ଟୋରି ।'

ପରଦିନ ସକାଳ ଟ୍ରେନ୍‌ରେ କନକ ଭାଇ ହେରିକା ବିଦାୟ ନେଲେ । ସଂଧ୍ୟାରେ ତୁମେ ଦେଇଥିବା ବାପ୍ତା ପଞ୍ଜାବୀ ଓ ଶାନ୍ତିପୁରୀ ଧୋତି ପିନ୍ଧି ଘଟକ ଭାଉଜଙ୍କ ଡିପ୍ଲୋମାଟିକ୍ ଏନ୍‌କ୍ଲେଭର୍ ଘରକୁ ଗଲି ।

ଜୋଇଁ ନହେଲେ ବି ମୋର ଜୋଇଁ ବେଶ ଦେଖି ଘଟକ ଭାଉଜ ବେଶ୍ ଉତ୍ତେଜିତ ହୋଇପଡ଼ିଲେ । ହାତ ବଢ଼େଇ ଦେଇ କହିଲେ, 'ବାଛୁ, ତୁ ଆଜି ୱାଣ୍ଡରଫୁଲ୍ ଦେଖାଯାଉଛୁ ।' ତାପରେ ନ୍ୟାଚୁରାଲ୍ କଲର୍‌ର ଲିପ୍‌ଷ୍ଟିକ୍ ମଖା ଓଠକୁ ବୁଲେଇ କହିଲେ, 'କିନ୍ତୁ ଠିକ୍ ମାନୁନାହିଁ ।' ଟିକିଏ ଚୁପ୍ ରହି ଯାଇ କହିଲେ, 'ତାପସୀ ପାଖରେ ନଥିଲେ ତୋତେ ଏଇ ପୋଷାକଟା ମାନୁନି ।'

ଘଟକ ଭାଉ ଡିନର୍ ଖାଇଦେଇ ଜଣେ ବନ୍ଧୁଙ୍କୁ ରିସିଭ୍ କରିବାକୁ ପାଲାମକୁ ଚାଲିଗଲେ। ଡ୍ରଇଂରୁମ୍‌ର ପ୍ୟାନେଲ୍ ଲାଇଟ୍‌ଗୁଡ଼ିକ ଲିଭେଇଦେଇ କେବଳ ଟେବୁଲ୍ ଲ୍ୟାମ୍ପର ଝାପ୍‌ସା ଆଲୁଅରେ ବସି ସେଦିନ ରାତିରେ ଘଟକ ଭାଉଜ ପ୍ରିୟା ବୋଷ୍‌ର କିଛି କାହାଣୀ ଶୁଣାଇଲେ।

ଅଜିତ୍ ବୋଷ ସରକାରୀ ଅଫିସ୍‌ରେ ସାଧାରଣ ଚାକିରି କରି ମଧ୍ୟ ସ୍ତ୍ରୀ ଓ ଏକମାତ୍ର କନ୍ୟାକୁ ନେଇ ବେଶ୍ ସୁଖରେ ସଂସାର କରିଥିଲେ। ପାଞ୍ଚ ସାତବର୍ଷ ପୂର୍ବେ ପୂଜା ସମୟରେ ସ୍ତ୍ରୀ-ପ୍ରିୟା ସାହିର ପୁଅ ଝିଅଙ୍କ ସାଥିରେ ମିଶି ଶରତଚନ୍ଦ୍ରଙ୍କ 'ଗୃହଦାହ' ନାଟକରେ ଅଭିନୟ କରିଥିଲେ।

'ଗୃହଦାହ' ନାଟକରେ ଅଭିନୟ କଲା ପରେ ପ୍ରିୟା ବୋଷଙ୍କ ନାମ ବିଖ୍ୟାତ ହେଇପଡ଼ିଲା ଦିଲ୍ଲୀର ଚାରିଆଡ଼େ। କିଛିକାଳ ପରେ ସାହି ତଥା ପଡ଼ା ପଡ଼ୋଶୀଙ୍କ ଅନୁରୋଧ କ୍ରମେ ପ୍ରିୟା ଦେବୀ ପୁଣି ଅଭିନୟ କରିବାକୁ ଅନୁମତି ପାଇଲେ। ଯାପରେ ସେ ସ୍ୱାମୀଙ୍କୁ କେବଳ ଜଣେଇ ଦିଅନ୍ତି ଯେ ସେ ଅଭିନୟ କରିବେ, କିନ୍ତୁ ଅନୁମତି ମାଗନ୍ତି ନାହିଁ। ବର୍ଷେ ପୂରୁ ନ ପୂରୁଣୁ ପ୍ରିୟା ବୋଷ ନିୟମିତ ଅଭିନୟ କରିବା ଆରମ୍ଭ କରିଦେଲେ।

ବିଭିନ୍ନ ମହଲରେ ଭିନ୍ନ ଭିନ୍ନ ଲୋକଙ୍କ ସହିତ ନିୟମିତ ଅଭିନୟ କରୁ କରୁ ଅପରିଚିତ ପରିଚିତ ହୋଇଗଲେ ପ୍ରିୟା ବୋଷଙ୍କର। ସକାଳ ସଂଧ୍ୟାରେ ଏମାନଙ୍କର ଆଗମନ ଆରମ୍ଭ ହେଇଗଲା ବୋଷଙ୍କ ଘରକୁ। ପରିଚିତମାନଙ୍କ ସହିତ କିଛି କିଛି ମହୁମାଛି ମଧ୍ୟ ମଧୁ ଲାଭର ଗୋପନ ଆଶା ନେଇ ସମୟ ଅସମୟରେ ପ୍ରିୟା ବୋଷଙ୍କ ସାନ୍ନିଧ୍ୟଲାଭ ଆଶାରେ ଆସିବାକୁ ଲାଗିଲେ। ସ୍ତ୍ରୀଙ୍କ ଅନୁରୋଧ ଉପରୋଧକୁ ଉପେକ୍ଷା କରିନପାରି ଅଜିତବାବୁ ଅଫିସରୁ କିଛି ଟଙ୍କା ଆଡ଼ଭାନ୍ସ ଆଣିଲେ, ବାହାର ଘରଟା ଡ୍ରଇଂରୁମ୍ ହେଲା, ନୂଆ ସୋଫାସେଟ୍ ପଡ଼ି କିଛି କ୍ୟାକ୍‌ଟସ୍‌ର ଟବ୍ ମଧ୍ୟ ଥୁଆ ହେଲା କୋଠରୀର ଚାରିକଡ଼ରେ। କିଛିଦିନ ପରେ ମେଜିଆରେ କାର୍‌ପେଟ୍ ବିଛା ହେଲା, ପ୍ରିୟା ବୋଷଙ୍କ ପୋଷାକ ପରିଚ୍ଛଦ ଓ ଆଚରଣରେ ମଧ୍ୟ ଆଧୁନିକତାର ସ୍ପର୍ଶ ବେଶ୍ ଦୃଢ଼ ଭାବରେ ଲାଖିଗଲା।

ଅଜିତ୍ ବାବୁ ପ୍ରତିବାଦ କରନ୍ତି, ବୁଝେଇବାକୁ ଯତ୍ନ କରନ୍ତି; କିନ୍ତୁ ସ୍ତ୍ରୀଙ୍କର କୌଣସି ପରିବର୍ତ୍ତନ ହେଲାନାହିଁ। ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ମନୋମାଳିନ୍ୟ ଆରମ୍ଭ ହେଲା କିଛିଦିନ ମଧ୍ୟରେ। ରିହାରସଲ୍ ସାରି ଘରକୁ ଫେରିବା ସମୟ କ୍ରମଶଃ ବିଳମ୍ବିତ ହେବାକୁ ଲାଗିଲା। ଥରେ ଦୁଇଥର ମଧ୍ୟ ରାତିର ଶେଷ ପ୍ରହର ଆଡ଼କୁ ଫେରିଲେ ପ୍ରିୟା ବୋଷ୍। ଟ୍ୟାକ୍ସି ଭଡ଼ା ଆଳରେ ବେଶ୍ କିଛି ଟଙ୍କା ଆୟ କରିବାକୁ ଆରମ୍ଭ ମଧ୍ୟ କଲେ।

ଘଟକ ଭାଉଜ ଆଉ କପେ କଫି ଦେବାକୁ ବେହେରାକୁ କହିଲେ। ତାପରେ କଫି କପ୍‌ରେ ଚୁମକ ଦେଇ ଆରମ୍ଭ କଲେ— ଆଠଦଶ ବର୍ଷର ଝିଅଟା ସାମନାରେ ସ୍ତ୍ରୀଙ୍କ ଏଭଳି ଉଚ୍ଛୃଙ୍ଖଳତାକୁ ବରଦାସ୍ତ କରିବା ମିଃ ବୋଷଙ୍କ ପକ୍ଷରେ ବେଶିଦିନ୍

ସମ୍ଭବ ହେଲାନାହିଁ । ଶେଷରେ ନିରୂପାୟ ହୋଇ ସେ ହୋଟେଲରେ ଆଶ୍ରୟ ନେଲେ ଏବଂ ଝିଅକୁ ବଡ଼ ମାଉସୀଙ୍କ ହେପାଜତରେ ଛାଡ଼ିଦେଲେ । ଏପଟେ ପ୍ରିୟା ବହୁ ଘାଟରୁ ପାଣି ପିଇ ଶେଷରେ ଜଣେ ମୁରବୀ ସ୍ଥାନୀୟ ବ୍ୟକ୍ତିଙ୍କ ଡାଇରେକ୍ସନ୍‌ରେ କେବଳ ଅଭିନୟ କଲେନାହିଁ ଯେ ଜୀବନଟା ମଧ୍ୟ ବିତେଇବାକୁ ଲାଗିଲେ । ଆଜି ମଧ୍ୟ ସେ ସେଇ ମୁରବୀ ବ୍ୟକ୍ତିଙ୍କ ଗଳାର ହାର ହୋଇ ରହିଛନ୍ତି ଏବଂ ଅଜିତବାବୁ ଆଜି ବି ହୋଟେଲର ଏକ କୋଠରୀରେ ଖଟିଆରେ ଶୋଇ ଶୋଇ ଝିଅଟାର କଥା ଭାବି ଭାବି କେବଳ ଦୀର୍ଘନିଃଶ୍ୱାସ ଛାଡ଼ି ଛାଡ଼ି ଜୀବନ କାଟୁଛନ୍ତି ।

ଏଇତକ କାହାଣୀ ଶୁଣେଇବାକୁ ଘଟକ ଭାଉଜ ଅନେକ ରାତି କରିଦେଲେ । ପରେ ଆଉ କୋଉ ଦିନ ପ୍ରିୟା ବୋଷର ଆହୁରି କିଛି କାହାଣୀ ଶୁଣିବି ବୋଲି ପ୍ରତିଶ୍ରୁତି ଦେଇ ସେଇ ରାତି ପାଇଁ ଘଟକ ଭାଉଜଙ୍କ ପାଖରୁ ବିଦାୟ ନେଲି ।

ଆଜି ଏତିକି । ପରେ ପୁଣି ଚିଠି ଦେବି ।

— ତୁମରି ବାଜୁ

ମେମ୍ ସାହେବ;

ବେଶୀଦିନ ନୁହେଁ, ଏଇ ପ୍ରାୟ ପାଞ୍ଚହଜାର ବର୍ଷ ପୂର୍ବେ ତୁମ ଆମର ପିତୃପୁରୁଷ ଯେଉଁ ଜନ୍ମଭୂମି ତ୍ୟାଗ କରି ଚାଲିଯାଇଥିଲେ, ତାହା ହିଁ ଆଜିର ଆଫଗାନିସ୍ଥାନ— ସେଇ ଅତୀତର ଆର୍ଯ୍ୟଭୂମିକୁ ଆସିବା ପରେ ତୁମଠାରୁ ଖଣ୍ଡେ ହେଲେ ଚିଠି ପାଇଲି ନାହିଁ । ଜାଣିପାରୁନି କ'ଣ ହେଇଛି ତୁମର । ଏବେବି କ'ଣ ଦେହଟା ଖରାପ ଅଛି ? ଧାଡ଼ିଏ ବି କ'ଣ ତୁମେ ମୋତେ ଖବରଟା ଦେଇ ନିଶ୍ଚିନ୍ତ କରିପାରନ୍ତ ନାହିଁ ?

ସକାଳୁ ରାତି ଆଠଟା ନଅଟା ଯାଏଁ ଅନବରତ କାର୍ଯ୍ୟବ୍ୟସ୍ତତା ଭିତରେ କଟିଯାଏ । ଡିପ୍ଲୋମାଟିକ୍ ମିଶନ୍ ବା ଇଣ୍ଡିଆନ୍ ଏମ୍ବାସୀର କୌଣସି ନା କୌଣସି ଡିନର୍ ପ୍ରାୟ ଥାଏ । ସେଇଥି ପାଇଁ ପ୍ରାୟ ଅଧରାତି ପୂର୍ବରୁ ନିଜ ଆଡ଼କୁ ଅନେଇବାକୁ ଠିକ୍ ଭାବେ ଅବସର ମିଳେନାହିଁ । କେବଳ ଶୁକ୍ରବାର ଏ ଦେଶରେ କୌଣସି ପାର୍ଟି ନଥାଏ । ସେଇଥିପାଇଁ ସେ ଦିନ ଶୁକ୍ରବାର ସନ୍ଧ୍ୟାରେ ମିଃ ଡେରିଲ୍‌ଙ୍କ ଅନୁରୋଧରେ ଇଣ୍ଟରନ୍ୟାସନାଲ କ୍ଲବକୁ ଯାଇଥିଲି । ସେଠି ଖୁବ୍ ବେଶି ଭିଡ଼ ନଥିଲେ ବି ବହୁଜାତିର ଅନେକ ସ୍ତ୍ରୀ-ପୁରୁଷ ଚତୁର୍ଦ୍ଦିଗରେ ବିଛେଇହେଇ ଥାଆନ୍ତି ।

ଡେରିଲ୍ ଓ ମୁଁ ଗୋଟିଏ ପାଖରେ ଏକ ଛୋଟ ଟେବୁଲ୍ ଦଖଲ କରି ବସିଲୁ । ବେହେରା ସ୍କଚ୍ ହ୍ୱିସ୍କିର ଦୁଇଟା ଗିଲାସ ଆଣି ଥୋଇଦେଇଗଲା । ହ୍ୱିସ୍କି ଗ୍ଲାସ୍‌ରେ ଚୁମକ ଦେଇ ଖଣ୍ଡେ ସିଗାରେଟ୍‌ରେ ନିଆଁ ଧରେଇ ଡେରିଲ୍ କହିଲା, 'ରିପୋର୍ଟର୍,

ତୁମ ସହିତ ଜଣେ ଭଦ୍ରଲୋକର ଆଳାପ କରେଇଦେବି । ଭାରି ଇଣ୍ଟେରେଷ୍ଟିଙ୍ଗ୍ ଏବଂ ରୋମାଣ୍ଟିକ୍ ଲୋକ । ତୁମେ ଆଳାପ କରି ଖୁସି ହେବ ।'

ମୁଁ ପଚାରିଲି, ' ହୁ-ଇଜ୍-ହି ?'

'ମିଃ ଉଇଲିୟମ୍ ଫକ୍ସ ।'

ନାଁଟା ଶୁଣୁ ଶୁଣୁ ମୋର ଭ୍ରୂକୁଞ୍ଚିତ ହେଇଗଲା । ମନେହେଲା, କୋଉଠି ଯେମିତି ଭଦ୍ରଲୋକଙ୍କ ନାଁଟା ଶୁଣିଛି ଅଥବା କୋଉଠି କେବେ ତାଙ୍କ ସହିତ ଆଳାପ କରିଛି । ଚେରିଲ୍‌କୁ ପଚାରିଲି-

'ମିଃ ଫକ୍ସ ରହନ୍ତି କୋଉଠି ? କଣ କରନ୍ତି ?'

ଯେମିତି ଶୁଣିଲି ଯେ ଫକ୍ସ ଜଣେ ବିଶ୍ୱବିଖ୍ୟାତ କଣ୍ଟ୍ରାକ୍ଟ ଫାର୍ମର ମାଲିକ ଏବଂ ସମ୍ପ୍ରତି କାବୁଲ୍‌ରେ ରହୁଛନ୍ତି, ମୁଁ ପ୍ରାୟ ଚିତ୍କାର କରି ଚେରିଲକୁ ପଚାରିଲି- 'ୱାଜ୍ ହି ଇନ୍ ଲେବାନନ୍ ସମ୍ ଇୟର୍‌ସ ବ୍ୟାକ୍, କେତେ ବର୍ଷ ଆଗରୁ ସେ ଲେବାନନ୍‌ରେ ଥିଲେ ?'

ଚେରିଲ୍ କହିଲା, 'ଦ୍ୟାଟ୍ସ ରାଇଟ୍ । ତୁମେ ତାଙ୍କୁ ଚିହ୍ନିଛ ?'

'ସେମିତି ବିଶେଷ ଭାବେ ନୁହେଁ, ତେବେ ବେରୁଟ୍‌ର ଏକ ହୋଟେଲ୍‌ରେ ଗୋଟିଏ ରାତି ମିସ୍ ଆଣ୍ଡ ମିସେସ୍ ଫକ୍ସଙ୍କ ସଙ୍ଗେ କଟେଇଥିଲି । ସାରା ରାତି ଆମେ ଗପ ସପରେ କଟେଇଲୁ । ତା'ପରଦିନ ସକାଳେ ସେମାନେ ମୋତେ ଏକ ଗ୍ରାଣ୍ଡ ବ୍ରେକ୍ ଫାଷ୍ଟ୍‌ରେ ଆପ୍ୟାୟିତ କରିଥିଲେ । ତାପରେ ମୁଁ ଗଲି ଏଥେନ୍ସକୁ । ସେ ଗଲେ କାଏରୋକୁ ।'

ଜାଣିଚ ମେମ୍ ସାହେବ, ମିଃ ଫକ୍ସଙ୍କ କଥା ଶୁଣୁ ଶୁଣୁ ସେଇ କେତେବର୍ଷ ପୂର୍ବେ ବେରୁଟ୍ ହୋଟେଲର ରାତିକୁ ଫେରିଗଲା ମୋର ମନ ।

ବି.ଓ.ଏ.ସି.ରୁ ବେରୁଟ୍‌ରେ ଓହ୍ଲେଇବା ପରେ ଆମର ଅଭିଭାବକତ୍ୱ ନେଲେ ବ୍ରିଟିଶ ୟୁରୋପିଏନ୍ ଏୟାରୱେଜ୍ । ଏୟାରପୋର୍ଟର ଦୋ-ମହଲା ଘରେ ବି.ଇ.ଏ. ଅଫିସ୍‌ରେ ଜଣେ ମେମ୍‌ସାହେବ ହୋଟେଲ ରିଜରଭେସନ୍ ସ୍ଲିପ୍ ଦେଇ ଜଣେ ସୁନ୍ଦରୀ ଲେବାନିଜ୍ ଯୁବତୀଙ୍କ ହାତରେ ସମର୍ପିଦେଇ କହିଲେ, 'ସି ଉଇଲ୍ ଟେକ୍ ୟୁ ଟୁ ୟୋର୍ ହୋଟେଲ ।'

ବି.ଇ.ଏ.ର ଛୋଟିଆ ଗାଡ଼ିରେ ଲେବାନିଜ୍ ଗ୍ରାଉଣ୍ଡ ହୋଷ୍ଟେସ୍ ପାଖରେ ବସି ହୋଟେଲ୍ ଯିବା ବେଳେ ଖୁବ ଭଲ ଲାଗିଥିଲା । ରାସ୍ତାର ଚାରିଆଡ଼େ, ବିଚ୍‌ର କୂଳେ କୂଳେ ଅସଂଖ୍ୟ ସୁନ୍ଦରୀ ଯୁବତୀମାନଙ୍କର ମେଳା ଦେଖି ମୋ ମନରେ ରଙ୍ଗ ଜମିଗଲା । ହୋଟେଲ୍‌ର ନିର୍ଦ୍ଦିଷ୍ଟ କୋଠରୀରେ ମୋତେ ପହଞ୍ଚେଇ ଦେଇ ଝିଅଟି ହାତ ବଢ଼େଇ ବିଦାୟ ନେବାକୁ ଚାହିଁବାରୁ ମୁଁ କହିଲି, ଏତେ ବ୍ୟସ୍ତ କାହିଁକି ? ହ୍ୟାଭ୍ ଲିଟିଲ୍ ଡ୍ରିଙ୍କ୍‌ସ !

ଟିକିଏ ଆପତ୍ତି କରି ମୋର ନିମନ୍ତ୍ରଣ ରକ୍ଷା କରିଥିଲା । କିନ୍ତୁ ପରବର୍ତ୍ତୀ ଫ୍ଲାଇଟ୍ ଆଟେଣ୍ଡ କରିବାକୁ ଥିବାରୁ ଟିକିଏ ତରବରରେ ବିଦାୟ ନେଲା ଝିଅଟି । ଝିଅଟିକୁ

ବିଦାୟ ଦେଇସାରି ମୁଁ ପୁଣି ଫେରିଗଲି ବାର୍‌କୁ ଏବଂ ସେଇଠି ହିଁ ମିଃ ଏଣ୍ଡ ମିସେସ୍ ଫକ୍ସଙ୍କ ସହିତ ଆଳାପ ହୁଏ ।

ବାର୍ କାଉଣ୍ଟର୍‌ରେ ଦୁହିଁଙ୍କର ଡ୍ରିଙ୍କସ୍ ବଦଳାବଦଳି ହେବାରୁ ମିଃ ଫକ୍ସଙ୍କ ସହିତ ମୋର ପ୍ରଥମ ଆଳାପ ହେଲା । ମିନିଟିଏ ଆଳାପରେ ସେ ମୋତେ ଅତି ଆଗ୍ରହ ଓ ଆଦର ସହିତ ନିଜ ସ୍ତ୍ରୀଙ୍କ ସହିତ ପରିଚୟ କରେଇଦେଇ ପାଖରେ ବସେଇଲେ । ମୁଁ ଜର୍ଣ୍ଣାଲିଷ୍ଟ ଏବଂ ଦିଲ୍ଲୀରେ ରହେ ଶୁଣି ମିଃ ମିସେସ୍ ଫକ୍ସ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ।

ସ୍ୱାମୀ-ସ୍ତ୍ରୀ ଏକାସାଙ୍ଗରେ ପ୍ରଶ୍ନ କଲେ, 'ୟୁ ନୋ ୟୋର୍ ମିନିଷ୍ଟର୍ ମିଃ ବାତ୍ରା ?'

ମିଃ ବାତ୍ରା ଭାରତବର୍ଷର ଜଣେ ନାମଜାଦା ମିନିଷ୍ଟର୍ ଏବଂ ପ୍ରଥିତଯଶା ରାଜନୈତିକ ନେତା । ତାଙ୍କ ଭଳି ଜଣେ ନେତାଙ୍କ ସହିତ ପରିଚୟ ନଥାଇ ଦିଲ୍ଲୀରେ ଆମମାନଙ୍କର କାର୍ଯ୍ୟ କରିବାଟାହିଁ ମୁସ୍କିଲ୍ ଏବଂ ସେଇଥିପାଇଁ ମୋର ବି ବେଶ୍ ପରିଚୟ ଥିଲା । ମୁଁ କହିଲି, 'ୟେସ୍ ଆଇ ନୋ ହିମ୍ ୱେଲ ।'

ଲମ୍ବାଳିଆ ଗ୍ଲାସ୍‌ର ତଳତଳିଆ ବିଏର୍‌ଟିକକରେ ଚୁମକ ଦେଇ ମିଃ ଫକ୍ସ କହିଲେ, 'ସେ ମୋ ପରିବାରର ଜଣେ ବିଶିଷ୍ଟ ବନ୍ଧୁ ।'

ସେତେବେଳେ ଆଉ ବେଶି କଥାବାର୍ତ୍ତା ହେଇନଥିଲା । ତିନିହେଁ ଡିନର୍ ଖାଇ ପୁଣି ଫେରିଆସିଲୁ ଘରକୁ । ପୃଥିବୀର ପ୍ରାୟ ସମସ୍ତ ସମ୍ଭାବ୍ୟ ବିଷୟକୁ ନେଇ ଆମର ଆଲୋଚନା ଚାଲିଲା ସେଇ ରାତିରେ । ସେଇ ରାତିରେ ଆମ ତିନିଜଣଙ୍କ ଭିତରୁ କିଏ କେତେ ପେଗ୍ ହ୍ୱିସ୍କି ପିଇ—

ଯାହାହଉ, ଠିକ୍ କଣ କଣ ଆଲୋଚନା ହେଇଥିଲା ତାହା ମନେନାହିଁ । ତେବେ ଭୁଲି ପାରିନି ମିନିଷ୍ଟର୍ ବାତ୍ରାଙ୍କ କାହାଣୀ ।

ମିଃ ଫକ୍ସ କହୁଥିଲେ, କାଲିଫର୍ଣ୍ଣିଆର ରେସ୍‌କୋର୍ସ ପଡ଼ିଆରେ ମିଃ ବାତ୍ରା ଏକ ଅଦ୍ଭୁତ ଘୋଡ଼ା ଉପରେ ଟିପ୍‌ସ ଧରି ପ୍ରଚୁର ଡଲାର ପାଇ ସବୁକିଛିକୁ ତା ଉପରେ ଲଗେଇ ଦେଇଥିଲେ । ସେଇଟା ବେଶ୍ କେତେ ବର୍ଷ ତଳର କଥା, ମୁଁ କିନ୍ତୁ ଭୁଲିନି । ଚାରିବର୍ଷ ପରେ ନିଉୟର୍କର ଏକ ହୋଟେଲ୍‌ରେ ମିଃ ବାତ୍ରାଙ୍କୁ ଦେଖି କଥାବାର୍ତ୍ତା କରିଥିଲି ଏବଂ ସେଇଦିନରୁ ଆମ ଦୁଇଜଣଙ୍କର ଗଭୀର ବନ୍ଧୁତ୍ୱ ।

ଏଇ କୋଟିପତି ଆମେରିକାନ୍ ଦମ୍ପତିଙ୍କଠୁ ସେଦିନ ରାତିରେ ଆମର ସର୍ବଜନପ୍ରିୟ ଦେଶନାୟକ ବାତ୍ରାଙ୍କ ଅନେକ କାହାଣୀ ଶୁଣିବାକୁ ପାଇଥିଲି ।

'ଜାଣିଚନା ଜର୍ଣ୍ଣାଲିଷ୍ଟ, ମିଃ ବାତ୍ରା ଆସିଲେ ମୁଁ ସବୁ ଟୁର୍ କ୍ୟାନ୍‌ସେଲ କରି ଷ୍ଟେଟ୍‌ସକୁ ଫେରିଆସେ ! ଦିନସାରା ହୋହଲ୍ଲା କରି ଆମେ ସଂଧ୍ୟାକୁ ଫେରିଆସୁ ଘରକୁ । ତାପରେ ଆରମ୍ଭ ହୁଏ ଆମର ଡ୍ରିଙ୍କ୍‌ସ ଆଉ ଖୁସିଗପ ।'

ଟିକିଏ ଚୁପ୍ ରହିଯାନ୍ତି ମିଃ ଫକ୍ସ । ପୁଣି ଆରମ୍ଭ କରନ୍ତି, ସାଧାରଣତଃ ମୁଁ ବେଶୀ ଡ୍ରିଙ୍କ୍ କରେନା, କିନ୍ତୁ ବାତ୍ରା ସାଙ୍ଗରେ ଆଡ୍ଡାରେ ବସିଗଲେ ଦୁହେଁ ମିଶି ବୋତଲ ପରେ ବୋତଲ ଶେଷ କରିଦେଉଁ । ଯଦି କୌଣସି କାରଣରୁ ମୁଁ ଅଟକିଯାଏ, ବାତ୍ରା ମୋ ସ୍ତ୍ରୀଙ୍କୁ ନେଇ ଚାଲିଯାଆନ୍ତି ବ୍ରଡ୍‌ୱେର କୌଣସି ନା କୌଣସି ପ୍ରୋଗ୍ରାମକୁ ଏବଂ ଜେନି (ମିସେସ୍ ଫକ୍ସ) ଲାଇକ୍‌ସ ହିମ୍ ଭେରି ମଚ୍ । କେବେ କେବେ ସେ ଦୁଇଜଣ ଚାଲିଯାନ୍ତି ସୁଇମିଂ କରିବାକୁ ଅଥବା ଅନ୍ୟ କୌଣସି ଆଉଟିଂରେ ।'

ମିସେସ୍ ଫକ୍ସ ତାଙ୍କର ସେକଟ୍ ଗାଉନ୍‌ଟିର ଟେପ୍ ଦୁଇଟିକୁ ଟିକିଏ ଟାଣିଦେଇ କହିଲେ, 'ବାତ୍ରା ଇଜ୍ ଫୁଲ ଅଫ୍ ଫ୍ୟାନ୍ସ । ତାଙ୍କୁ ନେଇ ଆଉଟିଂରେ ଗଲେ ମନେହୁଏ ଫୋପାଡ଼ି ଦେଇ ଆସିଥିବା ୟୁନିଭରସିଟିର ଦିନଗୁଡ଼ିକ ପୁଣି ଫେରିଆସିଛି । ଜାଣିଚ ନା ଜର୍ଣ୍ଣାଲିଷ୍ଟ, ଥରେ ମୋ ସହିତ ବାଜି ମାରି ମୋତେ ପିଠିରେ ଧରି ପ୍ରାୟ କିଲୋମିଟର୍ ଦୂରକୁ ପହଁରି ଯାଇଥିଲେ ବାତ୍ରା ।'

ମୁଁ ପ୍ରଶଂସା କରି କହିଲି, 'ୱାଣ୍ଡରଫୁଲ୍ ।'

ମିସେସ୍ ଫକ୍ସ କହିଲେ, 'ରାଗିବ ନାହିଁ ଜର୍ଣ୍ଣାଲିଷ୍ଟ, ଅଧିକାଂଶ ଇଣ୍ଡିଆନ୍ ବହୁତ ବେଶି କଞ୍ଜରଭେଟିଭ୍; ଲାଇଫ୍‌କୁ ଏଞ୍ଜୟ କରି ଜାଣନ୍ତି ନାହିଁ । କିନ୍ତୁ ବାତ୍ରା ସେପରି ନୁହନ୍ତି । ହି ନୋଜ୍ ହାଉ ଟୁ ଏଞ୍ଜୟ ଲାଇଫ୍– କିପରି ଭାବରେ ମଜା କରିହୁଏ !'

ମୁଁ କହିଲି, 'ଦ୍ୟାଟ୍‌ସ୍ ରାଇଟ୍ ମିସେସ୍ ଫକ୍‌ସ୍ !'

ମିଃ ଫକ୍ସ କହି ପକେଇଲେ, 'ଜାଣିଚ, ଥରେ ଆମ ଦୁହିଁଙ୍କର ହଠାତ୍ ଦେଖା ହେଇଗଲା ପ୍ୟାରିସ୍‌ର ଓର୍‌ଲି ଏୟାର୍‌ପୋର୍ଟରେ । ଦିନେ ମାତ୍ର ଆମେ ପ୍ୟାରିସ୍‌ରେ ରହିଥିଲୁଁ, କିନ୍ତୁ ଏମିତି ମଜା କରିଥିଲୁ ଯେ ଛାତ୍ର ଜୀବନର ପରେ ଆଉ ଏତେ ଆନନ୍ଦ କରିଛି ବୋଲି ମନେହୁଏନା ।' ମିଃ ଏଣ୍ଡ ମିସେସ୍ ଫକ୍ସ ଦିଲ୍ଲୀକୁ ଆସିଥିବା କଥା ଜଣାଇଲେ — 'ହି ଗେଭ୍ ଅସ୍ ଓ୍ୟାଣ୍ଡରଫଲ୍ ଡିନର୍ ଏଣ୍ଡ ବିଉଟିଫୁଲ୍ ଡ୍ରିଙ୍କ୍‌ସ ।'

ମୁଁ ସେମାନଙ୍କ କଥା ଶୁଣି ହୋ ହୋ କିନା ହସି ହସି ଗଡ଼ିଗଲି । କିନ୍ତୁ ମନେ ମନେ ଭାବିଲି ଯେଉଁ ଦେଶନାୟକ ଗାନ୍ଧୀବାଦୀ ବାତ୍ରାଙ୍କ ବକ୍ତୃତାର ରିପୋର୍ଟ ମୁଁ ଲେଖେ, ଯିଏ ବକ୍ତୃତାର ବିଦ୍ୟୁତ୍ ତରଙ୍ଗରେ ଦେଶବାସୀଙ୍କୁ ମୁଗ୍ଧ କରିଦିଅନ୍ତି, ସେ ହେଉଛନ୍ତି ଏଇ ବାତ୍ରା ? ଯିଏ ତ୍ରିରଙ୍ଗାକୁ ସମ୍ମୁଖରେ ରଖି ଜୀବନରେ ସମସ୍ତ ଆନନ୍ଦ ତ୍ୟାଗ କରିଛନ୍ତି ବୋଲି ଆମେ ଜାଣିଛୁ, ଇଏ କଣ ସିଏ ଯିଏ ମିସେସ୍ ଫକ୍ସଙ୍କ ସାଥିରେ ଅସଂଖ୍ୟ ଖେଳାଲୀଳା କରନ୍ତି ? ସନ୍ଦେହ କରିବାର କୌଣସି କାରଣ ନଥିଲେ ବି ବିଶ୍ୱାସ କରିବାରେ କେମିତି କାହିଁକି ଦ୍ୱିଧାବୋଧ କରୁଥିଲି ।

ଜାଣିଚ ମେମ୍‌ସାହେବ, ସେଦିନ ରାତିରେ ଇଣ୍ଟରନ୍ୟାସନାଲ୍ କ୍ଲବ୍‌ରେ ମିଃ ଏଣ୍ଡ ମିସେସ୍‌ଙ୍କ ଦେଖା ପାଇଲି ନାହିଁ । କିନ୍ତୁ ଚେରିଲ ପ୍ରତିଶ୍ରୁତି ଦେଇଛି ସେଇ ଦୁଇଜଣଙ୍କୁ ଆମ ହୋଟେଲକୁ ଆଣିବ । ଜାଣେନା, ଆଉ କୌଣସି ନୂତନ କାହାଣୀ ଶୁଣିବି ।

ମୋର ସ୍ନେହ ନିଅ ।

— ତୁମର ବାଚ୍ଚୁ

ମେମ୍ ସାହେବ,

ଅନ୍ଧକାର ଅମାବାସ୍ୟାର ଗଭୀର ରାତ୍ରୀରେ କ୍ଳାନ୍ତ, କ୍ଷୁଧାର୍ତ୍ତ ପଥିକ ଗହନ ଅରଣ୍ୟରେ ପଥ ହରେଇଥିଲା । ଦିଗଭ୍ରାନ୍ତ ସେଇ ପଥିକ ଶ୍ୱାପଦସଂକୁଳ ବନ ବନାନ୍ତରେ ଘୂରୁ ଘୂରୁ ଜୀବନ ସଂଶୟରେ ଆତଙ୍କିତ ହୋଇପଡ଼ିଲା । ହଠାତ୍ ଏପରି ସମୟରେ ସ୍ୱପ୍ନ ସଦୃଶ ରଥାରୂଢ଼ ଏକ ରାଜକନ୍ୟା ଆବିର୍ଭାବ ହେଲା । ସୁନ୍ଦରୀ ଅଷ୍ଟାଦଶୀ ସେଇ ରାଜକନ୍ୟା ପଥିକକୁ ଆଣି ଆସିଲା ରାଜପ୍ରାସାଦକୁ । ଆହାର ଦେଲା, ଅଭ୍ୟର୍ଥନା କଲା । ତାପରେ ? ତାପରେ ରାଜକନ୍ୟା ମୁଗ୍ଧ ଯନରେ ପଥିକକୁ ଅନେଇଥିଲା-ମନେ ମନେ ଆତ୍ମସମର୍ପଣ ବି କରିଥିଲା । ପାଟି ଖୋଲି କହିନଥିଲା ରାଜନନ୍ଦିନୀ, ତେବେ ପଥିକର ବୁକୁରେ ମଥା ରଖି ତା ମନର ଆନନ୍ଦୋତ୍ସବର ଇଙ୍ଗିତ ଦେଇଥିଲା ।

ଆଚ୍ଛା, ମେମ୍ସାହେବ, ଭାବି କି ପାରୁଛ ସେଇ ପଥିକର ମନର ଅବସ୍ଥାଟା ? ଯଦି ପାରୁଛ, ତେବେ ଆଉ ବେଶୀକିଛି ଲେଖିବା ନିଷ୍ପ୍ରୟୋଜନ । ହୋଟେଲରୁ କାବୁଲ୍ ଇଣ୍ଟରନ୍ୟାସନାଲ ଏୟାରପୋର୍ଟକୁ ଯିବାର ପ୍ରାୟ ପାଞ୍ଚ ମିନିଟ୍ ଆଗରୁ ମ୍ୟାନେଜର୍ ତୁମର ମୋଟା ମୋଟା ଦୁଇଟା ଲଫାଫା ମୋ ହାତରେ ଦେବାରୁ ମୋର ମନର ଅବସ୍ଥା ସେଇ ପଥିକର ଭଳି ଆନନ୍ଦରେ ଭରିଗଲା । କୌଣସିମତେ ଚିଠି ଦୁଇଟାରେ ଟିକିଏ ଆଖି ବୁଲେଇ ନେଇ ଏୟାରପୋର୍ଟକୁ ଚାଲିଗଲି । ହାତରେ ବେଶୀ ସମୟ ନଥିଲା । ଲଗେଜ୍ ଚେକ୍ ଅପ୍ କଷ୍ଟମ୍ସ ଚେକ୍ ଇମିଗ୍ରେସନ୍-ହେଲ୍ଥ କାଉଣ୍ଟର ପାରିହେଇ ଟ୍ରାନ୍‌ଜିଟ୍ ଲାଉନଜ୍‌କୁ ଆସୁ, ନଆସୁଣୁ ଆନାଉନ୍ସମେଣ୍ଟ ହେଲା– ମେ ଆଇ ହ୍ୟାଭ୍ ୟୋର ଆଟେନ୍‌ସନ ପ୍ଲିଜ୍ ? ପ୍ୟାସେଞ୍ଜରସ ଟ୍ରାଭଲିଂ ବାଇ ଫ୍ଲାଇଟ୍ ନମ୍ବର ଆଇ.ସି. ଫୋର-ଫାଇଭ୍-ଟୁ ଫ୍ରମ୍ କାବୁଲ୍ ଟୁ ଦେଲ୍‌ହୀ ଆର୍ ରିକ୍ୱେଷ୍ଟେଡ୍ ଟୁ ପ୍ରୋସିଡ୍ ଟୁ ଦି ଏୟାରକ୍ରାଫ୍ଟ । ସଙ୍ଗେ ସଙ୍ଗେ ନିଆଁ ଧରେଇଥିବା ସିଗାରେଟକୁ ଫୋପାଡ଼ି ଦେଇ ବ୍ରିଫ୍‌କେଶ୍ ଓ ଟାଇପ୍‌ରାଇଟର୍‌ଟିକୁ ଧରି ପ୍ଳେନ୍‌ରେ ଚଢ଼ିଲି । ଆଉ କାଳ ବିଳମ୍ବ ନ କରି ତୁମର ଚିଠି ପଢ଼ିବାକୁ ଆରମ୍ଭ କରିଦେଲି । ସୁନ୍ଦରୀ ଯୁବତୀ ଏୟାର୍ ହୋଷ୍ଟେସ୍ ଜଣକ ନିଜର ଉଡ଼ନ୍ତା ପଣତକୁ ସମ୍ଭାଳି ନଉନଉ, 'ଏକ୍ସକିଉଜ୍ ମି' କହି ଚକୋଲେଟ୍‌ର ଥାଳିଟିକୁ ଦେଖେଇଥିଲେ ବି ତାହାକୁ ପ୍ରତ୍ୟାଖ୍ୟାନ କରିବାକୁ ପଡ଼ିଲା । ଏକ ନିଃଶ୍ୱାସରେ ତୁମର ଚିଠି ଦୁଇଟାକୁ କେତେଥର ଯେ ପଢ଼ି ପକେଇଲି ତାହା ମନେନାହିଁ, କିନ୍ତୁ ମନେଅଛି ଆନନ୍ଦର ଆତିଶଯ୍ୟରେ ଚିଠି ଦୁଇଟିକୁ ବହୁତ ବହୁତ ଗେଲ କରିଥିଲି । ତାପରେ ଚିଠି ଦୁଇଟିକୁ କୋଟ୍‌ର ଇନର ପକେଟ୍‌ରେ ରଖି ପର୍ଶରେ ଥିବା ତୁମର ସେଇ ଜୁହୁ ବିଚ୍‌ରେ ଉଠା ହେଇଥିବା ଫଟୋଟିକୁ ଦେଖିବାକୁ ଗଲାବେଳେ ମନେହେଲା

କେହି ସତେ ମୁରୁକି ହସୁଛି । ଅନେଇ ଦେଖିଲି ଜଣେ ଏୟାର୍ ହୋଷ୍ଟେସ ଟ୍ରେରେ କଫି ଓ ସ୍ନାକ୍ସ ଧରି ବେଶ୍ ହସୁଛି । ଟିକିଏ ଲଜ୍ଜିତ ହେଲି; ପଚାରିଲି, 'ବହୁତ ସମୟ ଧରି ବୋଧେ ଛିଡ଼ା ହୋଇଛନ୍ତି ?'

ମୁଖର ହସରେଖାଗୁଡ଼ିକୁ ଆଉ ଟିକିଏ ପ୍ରସାରିତ କରି ଉତ୍ତର ଦେଲା, 'ଏଇ ପାଞ୍ଚସାତ ମିନିଟ୍ ହେବ ।'

'ସରି' କହି ଟ୍ରେଟିକୁ ହାତକୁ ନେଇନେଲି ।

ପେଷ୍ଟ୍ରି ଏବଂ କଫି ଖାଉଖାଉ ଘଡ଼ିକୁ ଦେଖି ଜାଣିଲି ଅନେକଟା ପଥ ଅତିକ୍ରାନ୍ତ ହୋଇଯାଇଛି । ହୋଷ୍ଟେସ୍‌କୁ ଡାକି କହିଲି, 'କ୍ୟାପ୍‌ଟେନ୍‌ଙ୍କୁ ଟିକିଏ ପଚାରି ବୁଝନ୍ତୁ ଯେ ଖାଇବର ପାସ୍‌ଟା କେତେବେଳେ ଆସୁଛି ।'

ପ୍ରାୟ ପାଞ୍ଚ ମିନିଟ୍ ଭିତରେ ସେଇ ଐତିହାସିକ ଗିରିପଥର ଉପର ଦେଇ ଉଡ଼ିବି ବୋଲି ଜାଣି ତରବରିଆ ଭାବେ କଫି କପ୍‌ରେ ଚୁମକ୍ ଦେଇ ସିଗାରେଟ୍‌ରେ ନିଆଁ ଧରେଇ ବାହାରକୁ ଅନେଇ ବସିରହିଛି । ସତକୁସତ ପ୍ରାୟ ପାଞ୍ଚମିନିଟ୍ ଭିତରେ ଆମେ ଆସିଗଲୁ ସେଇ ଐତିହାସିକ ଗିରିପଥର ଉପରକୁ । ମନଟା କାହିଁକି ଉଦାସ ହେଇଗଲା । ମୁହୂର୍ତ୍ତକ ପାଇଁ ମନ ଭିତରେ ବହିଗଲା ଇତିହାସର ଝଡ଼ ।...

...ଯୀଶୁଖ୍ରୀଷ୍ଟଙ୍କ ଜନ୍ମର ଦୁଇହଜାର ବର୍ଷ ପୂର୍ବେ ମଧ୍ୟଏସିଆରୁ ଆଫଗାନିସ୍ଥାନ ଦେଇ ଏଇ ଗିରିପଥରେ ଆସି ଆମମାନଙ୍କର ପୂର୍ବପୁରୁଷ ଆର୍ଯ୍ୟମାନେ ପ୍ରବେଶ କରିଥିଲେ ଭାରତବର୍ଷର ସମତଳ ଭୂମିରେ । ମନେହେଲା, ମୁଁ ବି ସତରେ ସେହି ତୀର୍ଥଯାତ୍ରାରେ ଚାଲିଛି । ପାହାଡ଼ର ଉଠାଣି ଗଡ଼ାଣିମାନଙ୍କରେ ଚଢ଼ାଉତରା କରୁ କରୁ କ୍ଳାନ୍ତ ହେଇ ମଝିରେ ମଝିରେ ବିଶ୍ରାମ ନଉଛି, ପୁଣି ତାପରେ ଆଗେଇଛି । ସିନ୍ଧୁନଦୀର ଉପତ୍ୟକାରେ କେତେବେଳେ ଖାଇବର୍ ଗିରିପଥ ପଛରେ ଛାଡ଼ିଆସିଲି– ତାର ଟେର୍ ବି ପାଇଲି ନାହିଁ । ମନେହେଲା, ପ୍ରାଚୀନ ଗ୍ରୀସ୍‌ର ଶୌର୍ଯ୍ୟବୀର୍ଯ୍ୟର ପ୍ରତୀକ ଆଲେକ୍‌ଜାଣ୍ଡାର୍ ଖ୍ରୀଷ୍ଟପୂର୍ବ ୩୨୭ ସାଲରେ ବି ସେଇ ପଥଦେଇ ଯାଇଥିଲେ । ତାପରେ କେତେ କେତେ ଜଣ ଆସିଛନ୍ତି ଆଉ ଯାଇଛନ୍ତି ଏଇ ଦୁର୍ଗମ ଖାଇବର୍ ଗିରିପଥ ପାରିହେଇ । ଭାରତବର୍ଷର ଅମୂଲ୍ୟ ଐଶ୍ୱର୍ଯ୍ୟକୁ ଲୁଟପୋଟ କରି ନେଇଥିଲେ ମହମ୍ମଦ ଗଜ୍‌ନୀ । ଇତିହାସର ପ୍ରତିଟି ପୃଷ୍ଠାରେ ସେଇ କଳଙ୍କିତ ଅଧ୍ୟାୟକୁ ବିସ୍ତୃତ ଭାବରେ ପଢ଼ିଛ ନିଶ୍ଚୟ । ସେଇଟା ଖ୍ରୀଷ୍ଟାବ୍ଦ ୧୦୦୦ର କଥା । ଠିକ୍ ଦୁଇଶହ କୋଡ଼ିଏ ବର୍ଷ ପରେ - ୧୨୨୦ ଖ୍ରୀଷ୍ଟାବ୍ଦରେ ଦୁର୍ଦ୍ଧର୍ଷ ଆକ୍ରମଣକାରୀ ଚେଙ୍ଗିଜ୍ ଖାଁ ଏଇ ଖାଇବର୍ ଦେଇ ପଶିଥିଲେ ଭାରତବର୍ଷରେ । ଭାରତବର୍ଷର ପୁଣ୍ୟତୀର୍ଥମାନଙ୍କର ଗାତ୍ରେ ଗାତ୍ରେ ତାଙ୍କ ଆକ୍ରମଣର ନିଷ୍ଠୁର ସ୍ମୃତିଚିହ୍ନ ଆଜି ବି ଦେଖିବାକୁ ମିଳେ । ଭାଇକାଉଣ୍ଟ ପ୍ଲେନ୍‌ର ବଡ଼ ଝରକାଦେଇ ତଳକୁ ଅନଉ ଅନଉ ସତେକି ଦେଖିବାକୁ ପାଇଲି ଚେଙ୍ଗିଜ୍ ଖାଁ

ଧନରତ୍ନ ଅସୁମାରୀ ଐଶ୍ୱର୍ଯ୍ୟ ଲୁଟିଆଣି ଆନନ୍ଦରେ ଉନ୍ମାଦ ହେଇ ସୁରାପାନରେ ରତ ଅଛନ୍ତି । ଆଉ ସେଇ ପାଶବିକ ଉନ୍ମାଦନାର ମହୋତ୍ସବରେ ତାଙ୍କର ସୈନ୍ୟସାମନ୍ତ ପ୍ରମତ୍ତ ହେଇ ସର୍ବସମକ୍ଷରେ ଅପହୃତା ନାରୀଙ୍କ ସର୍ବସ୍ୱ ଲୁଣ୍ଠନ କରିଚାଲିଛନ୍ତି । ଏଇକଥା ଭାବୁଭାବୁ ଆଖିଦିଟା ମୋର କେମିତି କେଜାଣି ପୋଡ଼ିବାକୁ ଲାଗିଲା । ପ୍ରାଣଭରି ସେଇ ଐତିହାସିକ ଗିରିପଥର ପ୍ରତିଟି ଧୂଳିକଣା ଦେଖିବାର ଐକାନ୍ତିକ ଅଭିଳାଷ ସତ୍ତ୍ୱେବି ଆଖିପତାକୁ ବୁଜିବାକୁ ପଡ଼ିଲା—ଦୁଇ ହାତରେ ଦୁଇଆଖିକୁ ଚାପି ଧରିଲି ।

କଫି ଟ୍ରେକୁ ଫେରେଇ ନବାକୁ ଆସିଥିଲେ ଏୟାର୍ ହୋଷ୍ଟେସ୍ । ମୁଁ ଖିୟାଲ୍ କରିପାରିନି ।

'ଏନି ଥିଙ୍ଗ୍ ରଙ୍ଗ୍ ?' ପଚାରିଲେ ସେ ।

ଆଖି ଖୋଲି ଦେଖିଲି ଏୟାର୍‌ହୋଷ୍ଟେସ୍ କେମିତି ବିସ୍ମୟ ଦୃଷ୍ଟିରେ ଅନେଇ ରହିଛନ୍ତି । ତାଙ୍କୁ ଆଶ୍ୱସ୍ତ କରିବାକୁ କହିଲି- ନା' ନା କିଛି ହେଇନି ।

'ତେବେ ପୁଣି କଣ ?'

'ଭାବୁଥିଲି ଖାଇବର୍ ପାସ୍‌ର କଥା । ଭାବୁଥିଲି ଆର୍ଯ୍ୟମାନଙ୍କର ଆଗମନର କଥା, ଆଲେକ୍‌ଜାଣ୍ଡାର୍‌ଙ୍କ ଆଗମନର କଥା, ମହମ୍ମଦ ଗଜନୀ ଆଉ ଚେଙ୍ଗିଜ୍ ଖାଁଙ୍କ କଥା । ଏମାନଙ୍କ ପରେ ସମରକନ୍ଦରୁ ୧୩୯୮ ଖ୍ରୀଷ୍ଟାବ୍ଦରେ ଆସିଥିଲେ ତୈମୁର୍ । ପନ୍ଦରଶହ ପାଞ୍ଚ ସାଲରୁ ଆରମ୍ଭ କରି ବାବର ପାଞ୍ଚଥର ଏଇ ଗିରିପଥରେ ଆସି ଭାରତ ଆକ୍ରମଣ କରିଥିଲେ ଏବଂ ଶେଷ ପର୍ଯ୍ୟନ୍ତ ମୋଗଲ ସାମ୍ରାଜ୍ୟର ପତନ ହେଲା ଦିଲ୍ଲୀରେ ।...

ମନେହେଲା, ଯେମିତି ମୁଁ ଲେକ୍‌ଚର୍ ଦେଉଛି, ସେଥିପାଇଁ ଚୁପ୍ ରହିଯିବାକୁ ବସୁଥିଲି । କିନ୍ତୁ ବାଧା ଆସିଲା ।

ଏୟାର୍ ହୋଷ୍ଟେସ୍ ଟ୍ରେଟିକୁ ସିଟ୍ ତଳେ ରଖିଦେଇ ମୋରି ପାଖରେ ବସିପଡ଼ି ପଚାରିଲେ, 'ତା'ପରେ ?'

ଟିକିଏ ହସିଦେଇ କହିଲି, 'ତା'ପରେ ଆଉ ପୁଣି କ'ଣ ? ଦିଲ୍ଲୀର ଲାଲ୍‌କିଲ୍ଲାରେ ମୋଗଲ ସାମ୍ରାଜ୍ୟର ଝଣ୍ଡା ଉଡ଼ିଛି, ଇଂରେଜମାନେ ୟୁନିୟନ୍ ଜ୍ୟାକ ଉଡ଼ାଉଛନ୍ତି, ତାର ଅନେକକାଳ ପରେ ନେତାଜୀ ସ୍ଲୋଗାନ୍ ଦେଲେ— ଚଲୋ ଚଲୋ ଦିଲ୍ଲୀ ଚଲୋ; ଲାଲ୍ କିଲ୍ଲା ଦଖଲ କର । ଏହାପରେ ନେହରୁ ସେଇ ଲାଲ୍‌କିଲ୍ଲାରେ ଦିନେ ସୁପ୍ରଭାତରେ ତ୍ରିରଙ୍ଗାକୁ ଉଡ଼େଇଲେ ।'

ଏୟାର୍‌ହୋଷ୍ଟେସ୍ ପୁଣି ପ୍ରଶ୍ନ କଲେ, 'ୟା'ପରେ କ'ଣ ଖାଇବର୍‌ରେ ଆଉକିଛି ଘଟିନି ?'

'ଘଟିନି କଣ କହୁଛନ୍ତି ? କାଶ୍ମୀର ବିଜୟ ପଥରେ ପଲାଶୀ ଯୁଦ୍ଧର ଠିକ୍ ବର୍ଷକ ଆଗରୁ ୧୭୫୬ ସାଲରେ ଆଫଗାନ୍‌ମାନେ ଆସିଛନ୍ତି ଖାଇବର୍ ଦେଇ । ଇଂରେଜ

ସମସ୍ତଙ୍କ ଅପେକ୍ଷା ପ୍ରଥମେ ଖାଇବର୍ ପାସ୍ ଦଖଲ କଲେ ୧୮୩୮ ସାଲର ୨୭ ଜୁଲାଇରେ ।'

ଜାଣିଛ ମେମ୍ ସାହେବ୍, ଏଇ ଖାଇବର୍ ଗିରିପଥ ବିଷୟକୁ ନେଇ ଆର୍ଥର କାନନ୍‌ଡାୟେଲ୍ ପରି ରହସ୍ୟମୟ ଏକ ବିରାଟ ବହି ଲେଖାଯାଇଛି । ବହିଟିର ସୂଚୀପତ୍ରର ହେଡ୍‌ଲାଇନ୍‌ଗୁଡ଼ିକ ଶୁଣୁ ଶୁଣୁ ହୋଷ୍ଟେସଙ୍କ ଆଗ୍ରହର ସୀମା ରହିଲା ନାହିଁ । ପ୍ରଶ୍ନ କରିଥିଲେ ସେ । ତାଙ୍କୁ କହିଥିଲି ଊନବିଂଶ ବା ବିଂଶ ଶତାବ୍ଦୀରେ ମଧ୍ୟ ଖାଇବର୍ କେବେ ବି ଦିନେ ବିଶ୍ରାମ ନେଇନି । ମଝିରେ ମଝିରେ ରାଇଫଲ୍‌ରୁ ଗୁଳି ନ ଫୁଟିଲେ କମାଣ ଗର୍ଜନ ନକଲେ ଖାଇବର୍ ସତେ କି ରାଗିଯାଏ ।

କଥା ହଉ ହଉ ଅନେକ ସମୟ ଚାଲିଗଲା । ସାମ୍‌ନାପଟୁ ନାଲି ଅକ୍ଷରର ଲେଖା ଜଳି ଉଠିଲା- ନୋ ସ୍ମୋକିଂ : ଫ୍ୟାସନ୍ ୟୋର୍ ସିଟ୍ ବେଲ୍ଟ ! ବୁଝିଗଲି, ପାଲାମ୍‌ର ମାଟି ଛୁଇଁବାକୁ ଆଉ ଡେରିନାହିଁ । ଏୟାର୍‌ହୋଷ୍ଟେସ୍ ଜଣକ ମୋର ଠିକଣା ନେଲେ, କହିଲେ– 'ଅଫ୍ ମିଳିଲାମାତ୍ରେ ମୁଁ ଆସିଯିବି ଆପଣଙ୍କ ଆସ୍ଥାନକୁ ଆହୁରି ବହୁତ ବହୁତ ଗପ ଶୁଣିବାକୁ । କଣ କହୁଛନ୍ତି ?'

କହିଲି, 'ନିଶ୍ଚୟ ଆସିବେ ।'

ଅଳ୍ପ କେତେ ମିନିଟ୍ ଭିତରେ ଭାଇକାଉଣ୍ଟର ତିନୋଟି ଚକ ପାଲାମର ଲମ୍ବା ରନ୍‌ୱେ ଦେଇ ଧୀରେ ଧୀରେ ଟର୍ମିନାଲ୍ ବିଲ୍‌ଡିଂର ସାମନାକୁ ଆସିଗଲା । ଏହାପରେ କଷ୍ଟମ୍‌ସ କାଉଣ୍ଟରରେ ଜଣେ ସହଯାତ୍ରୀଙ୍କୁ ତାଙ୍କର ମାଲପତ୍ର ଆଣୁ ଆଣୁ ଦେଖି ଆଶ୍ଚର୍ଯ୍ୟ ହୋଇଥିଲି । ମୋ ଆଖିରେ ପ୍ରଶ୍ନବାଚୀ ଚିହ୍ନ ଦେଖି ଏୟାର୍ ହୋଷ୍ଟେସ୍ ଜଣକ ମୋ କାନେ କାନେ ଫିସ୍‌ଫିସ୍ କିନା କହିଥିଲେ, 'ମିଃ ଚକ୍ରପାଣିଙ୍କ କଥା ଆପଣଙ୍କୁ କହିବି ।'

ପ୍ରାୟ ତିନିଦିନ ପରେ ଏୟାର୍ ହୋଷ୍ଟେସ୍ ଜଣକ ଦିନେ ମୋ ପାଖକୁ ଆସିଥିଲେ, ମିଃ ଚକ୍ରପାଣିଙ୍କ କାହାଣୀ ଶୁଣାଇଥିଲେ । ସେଇ କାହାଣୀ ମୋର ପରବର୍ତ୍ତୀ ଚିଠିରେ ଲେଖିବି ।

ମୋର ସରାଗ ନିଅ ।

— ତୁମରି ବାଛୁ

ମେମ୍‌ସାହେବ,

ଏଇ ଦୁନିଆରେ ତୁମ ଛଡ଼ା ଆଉ କାହାରି ଶାସନକୁ ମାନିବାକୁ ମୋର ମନ ଚାହେଁନା । ତୁମେ ପାଖରେ ନଥିଲେ ତୁମର ଶାସନର ଅଦୃଶ୍ୟ ହାତ ମୋର ଚାରିପାଖରେ ଘୂରି ବୁଲୁଥାଏ । ଟିକିଏ ବେନିୟମ, କିଞ୍ଚିତ୍ ଦୁଷ୍ଟାମୀ କରିବା ଆଗରୁ ଚମକି ପଡ଼େ । ମନେହୁଏ ସତେକି ରାଗରେ ତୁମର ସେଇ ସୁନ୍ଦର ସୁନ୍ଦର କଳା କଳା

ହରିଣାକ୍ଷି କୁଞ୍ଚିତ ହୋଇ ମୋତେ ଅନେଇ ରହିଚନ୍ତି । ପୁଣି ଛାତି ଭିତରେ ସତେ କି ବିଦ୍ୟୁତ୍ ଚମକି ଉଠେ । ମନେହୁଏ, ଯାହାର ବୁକୁର ନିଶ୍ଚିନ୍ତ ପ୍ରଦେଶରେ ମୋର ପ୍ରାଣର ପ୍ରାସାଦକୁ ଗଢ଼ି ତୋଳିଛି– ତାହା କ'ଣ ସତରେ ଅନ୍ୟାୟର ଭୂମିକମ୍ପରେ ଟଳମଳ ହେଇପଡ଼ିଛି ? ସେଇଥିପାଇଁ ତ ଭୟ ଆଉ ପ୍ରେମରେ ମୁଁ ହସି ହସି ତୁମରି ଇଚ୍ଛା ନିକଟରେ ଆତ୍ମସମର୍ପଣ କରି ତୁମର ଚିରଦିନର ବାଛୁ ହୋଇ ରହିଯାଏ । କଣ, ମିଛ କହିଲି ?

କିନ୍ତୁ ଜାଣିଚ ମେମ୍ ସାହେବ, ତୁମେ ପାଖରେ ନଥିଲେ ମୁଁ ସତେ ଯେମିତି ଆଉ ତୁମର 'ମୁଁ' ହେଇ ରହେନା । କୋଉଠୁ ଯେ କେଉଁ ମୃତ୍ୟୁର ମୁହଁରେ ଭାସି ଚାଲିଯାଏ, ତାର ହିସାବ ମୁଁ ନିଜେ ବି ରଖିପାରେନା । ସେଇ ସୁଅର ମୁହଁରେ ପ୍ରାୟ ସପ୍ତାହେ କାଳ ଭାସିଭାସି କେତେବେଳେ 'ବାର୍'କୁ ଯାଇଛି ତ କେତେବେଳେ ଆଡ୍‌ଡାଖାନାରେ ବସିବସି ଅନେକଙ୍କଠୁ ପୁନା 'ରେସ୍'ରେ ଗୋଲ୍‌ଡେନ୍ ଏଞ୍ଜେଲ୍ ଘୋଡ଼ାର କାହାଣୀ ଶୁଣିଛି; ପୁଣି ଦିନେ ହରିମୋହନ ଭାଇଙ୍କ ହାବୁଡ଼ରେ ପଡ଼ି ହରିସଭାର ବାର୍ଷିକ ଉତ୍ସବରେ ଖୋଳ କରତାଳ ବି ବଜେଇଛି । ଦିନର ଶେଷରେ ସଂଧ୍ୟାର ପରେ ପରେ ଅଥବା ମଧ୍ୟରାତ୍ରରେ ଯେତେବେଳେ ନିଜର ସମ୍ମୁଖୀନ ହୁଏ ସେତେବେଳେ ତୁମକୁ ମୁହଁ ଦେଖାଇବା ଭୟରେ ତକିଆରେ ମୁହଁ ଜାକି ଶୋଇପଡ଼େ । ଗତ ସପ୍ତାହରେ ତୁମକୁ ଚିଠି ଦେଇପାରିନି ବୋଲି ମୋତେ ଭୁଲ୍ ବୁଝିବ ନାହିଁ । ତୁମେ ଫେରିଆସିଲେ, ତୁମକୁ ପାଖରେ ପାଇଲେ, ମୋର ସମସ୍ତ ଅନ୍ତର ଦେଇ ମର୍ଯ୍ୟାଦା ଦେଇ ଆଜିର ତ୍ରୁଟି ବିଚ୍ୟୁତିର କ୍ଷତିପୂରଣ କରିଦେବି । ଏଇ ଦୀର୍ଘଦିନର ବିଚ୍ଛେଦରେ ଯାହା ପାଉଣା ତୁମଠାରେ ପ୍ରତି ଦିନର ପ୍ରତିମୂଲ୍ୟରେ ଜମା ହୋଇଉଠୁଛି, ଫେରିଆସିଲେ ତୁମେ ବି ନିଶ୍ଚୟ ତାର ଯଥାଯଥ କ୍ଷତିପୂରଣ ଦେବ । କ'ଣ କହୁଛ ?

ତୁମକୁ ତ ମିଃ ଚକ୍ରପାଣିର କଥା କହିନି ନା କଣ ? ତେବେ ଶୁଣ—

ପାଲାମ୍‌ର କଷ୍ଟମସ୍ କାଉଣ୍ଟର୍‌ରେ ନିତ୍ୟନୂତନ ବିଦେଶୀ ମାଲପତ୍ର ପାର ହଉଥିବା ଦେଖି ମୁଁ ଆଉ କିଛି ନ ହେଲେ ବି ଅନ୍ତତଃ ବୁଝିଥିଲି ଯେ ସେ ଜଣେ 'ସମ୍‌ବଡ଼ି' ଏବଂ ଧନିକ । ମୁଁ ତାଙ୍କୁ ଆଗେ କେବେ ନ ଦେଖିଥିଲେ ବି ମୋର ଅନୁମାନ ମିଥ୍ୟା ନୁହେଁ ।

ଆଚାର୍ଯ୍ୟ ହରିହର ଦାସ ବଙ୍ଗଭଙ୍ଗ ଆନ୍ଦୋଳନର ପରବର୍ତ୍ତୀ କାଳର ଭାରତବର୍ଷର ରାଜନୈତିକ ଜୀବନର ପହିଲି ପର୍ଯ୍ୟାୟର ନେତା ହିସାବରେ ସାରା ଦେଶରେ ବନ୍ଦିତ ହୋଇଛନ୍ତି । ଭାରତବର୍ଷର ସହରେ ସହରେ ନଗରେ ନଗରେ ଆଚାର୍ଯ୍ୟ ହରିହର ଦାସଙ୍କ ନାମରେ ନାମିତ ରାସ୍ତାଘାଟ ଏବଂ ନାନା ଡିଜାଇନ୍‌ର ଛୋଟବଡ଼ ସ୍ମୃତିସୌଧ ଆଜି ମଧ୍ୟ ସେଦିନର ଇତିହାସକୁ ମନରେ ଉଜ୍ଜୀବିତ କରି ତୋଳେ । ଦେଶ ଏବଂ ଦଶ

ପାଇଁ ଅସାଧାରଣ ଅବଦାନ ଥିଲେ ମଧ୍ୟ ନିଜର ଜୀବନକୁ ଉପେକ୍ଷା କରିନାହାନ୍ତି ଆଚାର୍ଯ୍ୟ । ଯେତେବେଳେ ସେ ଇଂରେଜମାନଙ୍କ ଦ୍ୱାରା ବନ୍ଦୀ ହୋଇନଥାନ୍ତି, କାରାଗାରରେ ଆବଦ୍ଧ ନଥାନ୍ତି, ସେତେବେଳେ ଆଚାର୍ଯ୍ୟ ମହାଶୟ ଅପରାହ୍ଣକାଳୀନ ଜନସଭାରୁ ସିଧାସଳଖ ଚାଲିଯାଆନ୍ତି ବାନ୍ଧବୀମାନଙ୍କର କୋମଳ କୋଳରେ ନିଜକୁ ବନ୍ଦୀ କରିରଖିବାକୁ ।

ଆଚାର୍ଯ୍ୟଙ୍କର ଏଇସବୁ କଥା ଓ କାହାଣୀ ବହୁଲୋକ ଜାଣନ୍ତି; ହୁଏତ ତୁମେ ବି କୌଣସି କୌଣସି ଲୋକଙ୍କ ମୁହଁରୁ ଶୁଣିଥିବ । ମୁଁ ଏକଥା ବହୁ ଲୋକଙ୍କଠୁ ଶୁଣିଛି । ଶୁଣିଛି ବି ଆଚାର୍ଯ୍ୟଙ୍କର ବଳିଷ୍ଠ ଚରିତ୍ରର ଆହୁରି ଅନେକ କାହାଣୀ ।

ଆମେ ଯେଉଁସବୁ କର୍ମ ସମାଜରେ ଲୋକଚକ୍ଷୁର ଅନ୍ତରାଳରେ ମଧ୍ୟ କରିବାକୁ ଭୟ ପାଉ, ଦ୍ୱିଧା କରୁ ଜନନାୟକ ଆଚାର୍ଯ୍ୟ ହରିହର ଦାସ, ନିର୍ଭୀକ ଭାବରେ ସେଇସବୁ କର୍ମ ସମାଜର ସମସ୍ତଙ୍କ ସାମନାରେ ଖୋଲାଖୋଲି ଭାବରେ ସ୍ପଷ୍ଟ ଦିବାଲୋକରେ କରିବାକୁ ବି ଦ୍ୱିଧାବୋଧ କରନ୍ତି ନାହିଁ । ଅସାଧାରଣ ବଳିଷ୍ଠ ଚରିତ୍ରର ଲୋକ ନହେଲେ ଏପରି ସତ୍‌ସାହସ ଦୁର୍ଲ୍ଲଭ । ବୟସ୍କମାନଙ୍କଠାରୁ ଶୁଣିଛି ସଂଭ୍ରାନ୍ତ ଘରର ସୁନ୍ଦରୀ ବାନ୍ଧବୀମାନଙ୍କ ସଙ୍ଗେ ଆଚାର୍ଯ୍ୟଙ୍କ ଘନିଷ୍ଠତାର କାହାଣୀ ଅଥବା ସ୍କଟଲ୍ୟାଣ୍ଡରେ ପୃଥିବୀ ବିଖ୍ୟାତ ପାନୀୟ ପ୍ରତି ତାଙ୍କର ଦୁର୍ବଳତାର କଥା ସେକାଳର କୌଣସି ଲୋକଙ୍କ ପାଖରେ ଅଛପା ନଥିଲା ।

ଏଇସବୁ ଜାଣିଥିଲି, କିନ୍ତୁ ଜାଣିନଥିଲି ଆଚାର୍ଯ୍ୟଙ୍କ ଅନ୍ୟତମ ବାନ୍ଧବୀ ଲେଡୀ ବ୍ରହ୍ମମୟୀ ଚକ୍ରପାଣିଙ୍କ ଏକମାତ୍ର ପୁତ୍ର ହେଉଛନ୍ତି ସେଦିନର କଷ୍ଟମସ୍ କାଉଣ୍ଟର୍‌ର ମିଃ ଚକ୍ରପାଣି । ଆଚାର୍ଯ୍ୟଙ୍କ ସ୍ନେହ ଛାୟାରେ ଜୀବନ କଟିଛି ଯୌବନର ପ୍ରାରମ୍ଭ ପର୍ଯ୍ୟନ୍ତ । ସେଥିପାଇଁ ଚକ୍ରପାଣିଙ୍କ ଚରିତ୍ରରେ ଆଚାର୍ଯ୍ୟଙ୍କ ଚରିତ୍ରର ବହୁ ସଦ୍‌ଗୁଣର ସ୍ପଷ୍ଟ ଇଙ୍ଗିତ ଦେଖିବାକୁ ମିଳେ ।

ଏୟାର୍ ହୋଷ୍ଟେସ୍ ମିସ୍ ଗ୍ରୋଭର କହୁଥିଲେ, ଏକ ବିଦେଶୀ ପ୍ଲେନ୍ କମ୍ପାନୀର ନାଏରୋବୀ ଦପ୍ତରରେ ଚାକିରି କରିବା ସମୟରେ ସେ ଚକ୍ରପାଣିଙ୍କୁ ଦେଖନ୍ତି ଓ ପରିଚିତ ମଧ୍ୟ ହୁଅନ୍ତି । ଜଣେ ସୁପ୍ରତିଷ୍ଠିତ ଭାରତୀୟ ବ୍ୟବସାୟୀ ରୂପେ ଚକ୍ରପାଣି ବିଭିନ୍ନ ପ୍ରଭାବଶାଳୀ ମହଲରେ ସମାଦୃତ ହୋଇଥାନ୍ତି । ସେଇ ସମାଦରର ସୂତ୍ର ଧରି ଚକ୍ରପାଣି ବନ୍ଧୁତ୍ୱ ବାନ୍ଧିଥିଲେ ଅସଂଖ୍ୟ ବାନ୍ଧବୀଙ୍କ ସଙ୍ଗେ । ଦିଲ୍ଲୀର ସରକାରୀ ଭବନଗୁଡ଼ିକର ଚୂଳରେ ଚୂଳରେ ତ୍ରିରଙ୍ଗା ଏବଂ ଲଲାଟେ ଲଲାଟେ ତ୍ରିସିଂହର ପୋଟ୍ରେଟ୍ ଚଢ଼ାଉଥିବା ଆଚାର୍ଯ୍ୟଙ୍କ ଅନୁକରଣରେ ଚକ୍ରପାଣିଙ୍କୁ ଦେଶସେବା କରିବାକୁ ପଡ଼ିନି । ଦେଶଟା ଯଦି ପରାଧୀନ ଥାଆନ୍ତା, କ୍ୟାଡ଼ିଲାକ୍-ଇମ୍ପାଲା ଛାଡ଼ି ପଦବ୍ରଜରେ ନିଶ୍ଚୟ ଗ୍ରାମରୁ ଗ୍ରାମାନ୍ତର ଘୂରୁଥାନ୍ତେ, 'ଇନ୍‌କିଲାବ୍ ଜିନ୍ଦାବାଦ୍' କରୁଥାନ୍ତେ । ବ୍ଲୁ-ଏକ୍ସ, ଲା-

କାବନା ଅଥବା ନଟରାଜ୍‌ରେ ଲଞ୍ଚଡିନର୍‌କୁ ଚକ୍ରପାଣି ସାହେବ ହସି ହସି ତ୍ୟାଗ କରିପାରନ୍ତେ ବୋଲି ମିସ୍ ଗ୍ରୋଭର୍‌ଙ୍କ ସ୍ଥିର ବିଶ୍ୱାସ ।

ମିସ୍ ଗ୍ରୋଭର୍‌ଙ୍କ ସହିତ ଦେଖା ହେବାର କିଛିଦିନ ପରେ ଏକ ପଲଟିକାଲ୍ ଆଡ୍‌ଡାଖାନାରେ କଥା ପ୍ରସଙ୍ଗରେ ଚକ୍ରପାଣି ସାହେବଙ୍କ କଥା ଉଠିଥିଲା । ସ୍ମରଣୀୟ ମହାପୁରୁଷ ଆଚାର୍ଯ୍ୟ ହରିଦାସଙ୍କ ବନ୍ଧୁପତ୍ନୀଙ୍କ ଗର୍ଭଜାତ ଏହି ସୁସନ୍ତାନଟି ପୃଥିବୀର ବନ୍ଦରେ ବନ୍ଦରେ ମାଲ୍ କ୍ରୟବିକ୍ରୟ କରୁଛନ୍ତି ଏବଂ ଫରେନ୍ ଏକ୍ସଚେଞ୍ଜର ମାଳା ପିନ୍ଧି ଭାରତବର୍ଷର ସୁଦିନର ଆଗମନ ପାଇଁ ସହାୟତା କରୁଛନ୍ତି । ଦେଶର ଉପକାର ସଙ୍ଗେ ସଙ୍ଗେ ଦଶର ଉପକାର କରିବାରେ ତାଙ୍କର କାର୍ପଣ୍ୟ ନାହିଁ । ଅନ୍ଧକାର ମହାଦେଶର ନଗରେ ସହରେ ଯୁବତୀମାନଙ୍କର ଆବେଦନ କୌଣସି ଦିନ ପ୍ରତ୍ୟାଖ୍ୟାନ କରିନାହାନ୍ତି । ନିଜକୁ ହଜେଇ ଦେଇଛନ୍ତି ଅକାତରେ । ପୃଥିବୀର ଦିଗଦିଗନ୍ତରୁ ଚକ୍ରପାଣି ଭାରତବର୍ଷକୁ ଯନ୍ତ୍ରପାତି ଇମ୍ପୋର୍ଟ କରିଛନ୍ତି, ନିଜର ଯୌବନକୁ ଏକ୍ସପୋର୍ଟ କରିଛନ୍ତି । କିନ୍ତୁ କେବେ ବି ଭୁଲରେ ସୁଦ୍ଧା ଦେଶର କ୍ଷତି କରିବାକୁ ବିବାହିତା ପତ୍ନୀ ଇମ୍ପୋର୍ଟ କରିନାହାନ୍ତି । ଆଚାର୍ଯ୍ୟ ହରି ଦାସଙ୍କ ବନ୍ଧୁପତ୍ନୀଙ୍କର ଗର୍ଭଜାତ ପୁତ୍ର ଛଡ଼ା ଅନ୍ୟ କୌଣସି ଭାରତୀୟ ପକ୍ଷେ ଏତେ ଆତ୍ମତ୍ୟାଗ କରି ଆଜିର ଦୁର୍ଦ୍ଦିନରେ ବି ଏପରି ଦେଶସେବା କରିବା ଯେ ସମ୍ଭବ ନୁହେଁ– ଏ କଥା ସମସ୍ତେ ସ୍ୱୀକାର କରନ୍ତି ।

ଆଚାର୍ଯ୍ୟ ହରି ଦାସଙ୍କ ରାଜନୈତିକ ଶିଷ୍ୟ ଆଜି ସାରା ଦେଶରେ ବିଛାଡ଼ି ହେଇ ପଡ଼ିଛନ୍ତି । ଏବଂ ସେମାନଙ୍କର ସହାୟତାରେ ଓ ଉଦ୍ଦୀପନାରେ ଚକ୍ରପାଣି ଭବିଷ୍ୟତରେ ହୁଏତ କଠୋରତର ଆତ୍ମତ୍ୟାଗ କରିବେ ।

ମେମ୍ ସାହେବ୍,

ଦେବଦାସ ତାର ସମସ୍ତ ମନପ୍ରାଣ ଦେଇ ପାରୁକୁ ଭଲ ପାଉଥିଲା । ସୁଖରେ ଦୁଃଖରେ, ଆଘାତରେ ସଂଘାତରେ, ଅଭାବରେ ପ୍ରାଚୁର୍ଯ୍ୟରେ, ନିକଟରେ ଅଥବା ଦୂରରେ ଥାଇ ବି ସେମାନଙ୍କର ଭଲ ପାଇବାରେ କିମ୍ବା ଜଣକର ଅନ୍ୟଜଣକ ପ୍ରତି ହୃଦୟ ମାଧୁର୍ଯ୍ୟର ଅଭାବ ଘଟିନି କେବେ । ପାରୁର ବିଚ୍ଛେଦକୁ ଦେବଦାସ ସହ୍ୟ କରିପାରିନି- ପାରିନି ମନରୁ ଅତୀତକୁ ପୋଛି । ମନର କୋଣ ଅନୁକୋଣରେ ଯେଉଁ ନିଷ୍କଳଙ୍କ ପ୍ରେମର ସ୍ୱର୍ଣ୍ଣମନ୍ଦିର ସେ ଗଢ଼ି ତୋଳିଥିଲା, ତାକୁ ମନରୁ ଲିଭେଇ ପକାଇବା ହୁଏତ ମୃତ୍ୟୁ ପରେ ବି ସମ୍ଭବ ନୁହେଁ । ଦେବଦାସ ସେକଥା ନିଶ୍ଚିତ ଭାବେ ଜାଣିଥିଲା, ତଥାପି ବି ସେ ଦୌଡ଼ି ଯାଉଥିଲା ଚନ୍ଦ୍ରମୁଖୀର ଆସରକୁ–ଭଲ ପାଇବସିଥିଲା ହୁଇସ୍କିର

ଦେଖିଲକୁ । ପାରିନି । ପାରୁକୁ ଭୁଲିବାକୁ ଇଚ୍ଛା କରି ଦେବଦାସ ଆହୁରି ବହୁତ ବେଶୀ ଆତ୍ମସମର୍ପଣ କରିଥିଲା । ସେଇଥିପାଇଁ ତ ଏଇ ଦୁଇଟି ଆତ୍ମା ମୃତ୍ୟୁ ତୀର୍ଥରେ ମିଳିତ ହୋଇ ଚିରକାଳ ପାଇଁ ପ୍ରମାଣ କରିଦେଇଗଲେ – ପ୍ରଣୟ କେବେବି ବ୍ୟର୍ଥ ଯାଏନା– ତାହା କେବେ ବି ବିଚ୍ଛେଦ ଆଣେନା - ଆଣେ ମିଳନ ।

ମେମ୍ ସାହେବ, ସେଇଥିପାଇଁ ତୁମକୁ ଜଣେଇବାକୁ ଚାହେଁ ଯେ ତୁମ ପାଖକୁ ନିୟମିତ ଚିଠିପତ୍ର ନ ଲେଖିଲେ ବି ତୁମଠାରୁ ମୁଁ ଦୂରେଇ ଯାଇନି । ତୁମର ଏଇ ସାମୟିକ ବିଚ୍ଛେଦକୁ ଭୁଲିଯିବା ପାଇଁ ମଝିରେ ମଝିରେ ବୃଥା ଚେଷ୍ଟା କରେ । ଆଜେବାଜେ ସୁଖର ମୁହଁରେ ନିଜକୁ ଭସେଇ ଦେଇ ପୁଣି ଆହୁରି ବେଶି ଦୁଃଖ ପାଏ–ଏଇକଥା ଭାବି ଯେ ନିଜର ମାଧ୍ୟମରେ ତୁମ ନିକଟରେ ନିଜକୁ ପ୍ରକାଶ କରିବାର ସୁଯୋଗଟିକୁ କାହିଁକି ହରେଇବସିଲି । ଅତୀତରେ ତୁମକୁ ଯାହା ବହୁବାର କହିଛି, ପୁଣି ସେଇକଥା କହୁଛି ଯେ ମୋତେ ଭୁଲ୍ ବୁଝ ନାହିଁ । ଜୀବନର ପ୍ରତିଟି ପଦପାତରେ ତୁମଠାରୁ ସମ୍ପୂର୍ଣ୍ଣ ଅନ୍ତର ଭରି ଏତେ ପାଇଛି ଯେ ବିଶ୍ୱର କୌଣସି ଆକର୍ଷଣ ବି ଆଜି ମୋତେ ତୁମଠାରୁ ଦୂରରେ ରଖିପାରିବ ନାହିଁ । ଯାହା ନିକଟରେ ଆତ୍ମସମର୍ପଣ କରି ନିଶ୍ଚନ୍ତ ହେଇଛି, ଯିଏ ଆନନ୍ଦରେ ସ୍ୱେଚ୍ଛାରେ ମୋର ସମସ୍ତ ଦାୟିତ୍ୱ ତୁଲେଇ ନେଉଛି, ତାକୁ କଣ ପର ଜନ୍ମରେ ହେଲେ ଭୁଲିପାରିବି ?

ଗତ କିଛିଦିନ ଧରି ଯାହାଙ୍କର ମହତ୍ ସାହଚର୍ଯ୍ୟ ପାଇ ମୁଁ ଧନ୍ୟ ହୋଇ ଦିନ ଗୁଜୁରାଣ କରୁଛି ସେ ହେଉଛନ୍ତି ମିଃ କଟକଟୀୟା । ୱାଣ୍ଡରଫୁଲ୍ ଲୋକ । ଭଦ୍ର ଲୋକଙ୍କ ସଙ୍ଗେ ଏତେଦିନ ଧରି କୌଣସି ଆଳାପ ହେଇପାରିନି ଭାବିଲେ ବଡ଼ ଖରାପ ଲାଗୁଛି ।

...ଜଣେ ବନ୍ଧୁଙ୍କ ସହିତ ଦେଖା କରିବାକୁ ରେଡ଼ିଓ ଷ୍ଟେସନ୍‌କୁ ଯାଇଥିଲି । ଆଳାପ ଆଲୋଚନାର ଶେଷ ଆଡ଼କୁ ଯିଏ ନେକ୍ସଟ ପ୍ରୋଗ୍ରାମ୍ ବିଷୟରେ ଖବର ଜାଣିବା ପାଇଁ ମୋର ବନ୍ଧୁଙ୍କୁ ସାକ୍ଷାତ୍ କରିବାକୁ ଆସିଲେ ସେ ଉର୍ବଶୀ ପରି ସୁନ୍ଦରୀ ନହେଲେ ବି ରମ୍ଭାଙ୍କ ସଦୃଶ ନିଶ୍ଚିତ ଭାବେ ଯୌବନ ପସାରିଣୀ । ମୋର ପାଖ ଚେୟାରଟା ଖାଲି ଥିଲେ ବି ସେ ବସିଲେ ନାହିଁ । ବନ୍ଧୁଙ୍କ ଚେୟାରକୁ ଲାଗିଯାଇ ସତେକି କଟୁ ଦୃଷ୍ଟିରେ ଚାହିଁ ଠିଆହେଲେ । ମୋର ଅନୁପସ୍ଥିତିରେ ବନ୍ଧୁଜଣଙ୍କ ନିଶ୍ଚୟ ଏଇ ଦୃଶ୍ୟକୁ ଉପଭୋଗ କରିଥାନ୍ତେ, କିନ୍ତୁ ନାରଦ ସଦୃଶ ସମ୍ବାଦପତ୍ରର ରିପୋର୍ଟର୍‌ଙ୍କ ଆଗରେ ବେଶ୍ ଅସ୍ୱସ୍ତିବୋଧ କରୁଥିଲେ । ମୋ ସାମନାରେ ଭାବପ୍ରକାଶ କରିବାରେ ଝିଅଟିର କୌଣସି ଅସୁବିଧା ହେଉଥିଲା ବୋଲି ମନେ ହେଲାନାହିଁ । ପ୍ରୋଗ୍ରାମ୍ ବାବଦରେ କଥାବାର୍ତ୍ତା ଶେଷ ହେଲା ପରେ ଝିଅଟି ମୋ ବନ୍ଧୁଙ୍କୁ ବେଶ୍ ଆଦର ସହକାରେ କହିଲେ, 'ଆପ୍ କଭି ହାମାରା କୋଠୀ ମେ ନେହିଁ ଆୟେ । ସୋ ୟୁ ମଷ୍ଟ କମ୍ପାନ୍‌ସେଟ୍ ।'

'ଠିକ୍ ଅଛି, ଠିକ୍ ଅଛି, ଦେଖିବା ।'

'ଠିକ୍ ଅଛି ନୁହେଁ, ଚାଲନ୍ତୁ, ଆସନ୍ତା ବୁଧବାର ଦିନ ଆଲୋୟାର୍ ଆଡ଼େ ଘୂରିଆସିବା ।'

'ବୁଧବାର ଯାଇ ହବ କୋଉଠି, ଛୁଟି ତ ନାହିଁ ।'

'ସେକଥା ମୁଁ ଜାଣିନି, ୟୁ ମଷ୍ଟ ଗିଭ୍ କମ୍ପାନୀ ଟୁ ମି । ମୁଁ ସର୍କିଟ୍ ହାଉସ୍ ରିଜର୍ଭ କରି ରଖିଛି ।' ଟିକିଏ ଅଟକି ଯାଇ ଖସିଯାଉଥିବା ଓଢ଼ଣିକୁ ଟାଣିଧରି କହିଲେ, 'ଆଇ ଆମ୍ ଆଫ୍ରେଡ୍, ଆଇ କାଣ୍ଟ କ୍ୟାନ୍‌ସେଲ୍ ଦି ପ୍ରୋଗ୍ରାମ୍ ନାଓ ।'

ମୁଁ ବୋକା ହେଲେ ବି ବେଶ୍ ବୁଝିପାରିଲି ଯେ ବନ୍ଧୁଙ୍କ ସଙ୍ଗେ ଶିଳ୍ପୀଙ୍କ ଯୋଗାଯୋଗ ଖୁବ୍ ନିବିଡ଼; କିନ୍ତୁ ମୋ ସାମନାରେ ନିମନ୍ତ୍ରଣ ଗ୍ରହଣ କରିବାରେ ଲଜ୍ଜାବୋଧ କରୁଥିଲେ ।

ମୁଁ ଉପଯାଚକ ଭାବେ ପରାମର୍ଶ ଦେଲି, 'ଛୁଟି ନଥିଲେ କ'ଣ ହେଇଗଲା, ଛୁଟି ନେଇନିଅ । ତାଛଡ଼ା ଆଲୋୟାର୍ ଇଜ୍ ଏ ଲଭ୍‌ଲି ପ୍ଲେସ୍, ସ୍ପେସିୟାଲି ଦି ଲେକ୍ ଏଣ୍ଡ୍ ଦି ସର୍କିଟ୍ ହାଉସ୍ ।'

'ଯୌବନ ପ୍ରସାରିଣୀ' ମୋ ଆଡ଼େ ଥରେ ତାଙ୍କର କୃପାଦୃଷ୍ଟି ନିକ୍ଷେପ କଲେ । ପଚାରିଲେ, 'ଆପଣ ବୋଧେ ଆଲୋୟାର୍ ଯାଇଛନ୍ତି ?'

'ବାଇରୋଡ୍ ଜୟପୁର ଯିବା ବାଟରେ ଦୁଇ ଚାରିଥର ଆଲୋୟାର୍ ଦେଖିଛି ଓ ରହିଛି । ତାଛଡ଼ା ମହାରାଜାଙ୍କ ଗେଷ୍ଟ ହାଉସ୍, ମାନେ ବର୍ତ୍ତମାନର ସର୍କିଟ୍ ହାଉସ୍‌ଟାକୁ ମୋତେ ଭାରି ଭଲ ଲାଗେ ।' ପୁଣି ଏକ ଚାପା ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲି, 'ତେବେ ଆପଣଙ୍କ ଭଳି କମ୍ପାନିୟନ୍ ନେଇ ଯାଇନି, ଏକା ଏକା, ନହେଲେ କୌଣସି ବନ୍ଧୁଙ୍କୁ ନେଇ ।'

ଓଠକୁ କାମୁଡ଼ି ଟିକିଏ ଚାପା ହସ ଉକୁଟି ଉଠିଲା ଶ୍ରୀମତୀଙ୍କ ରକ୍ତାଧରରେ । ତାପରେ ମୋର ଏକ୍‌ଜିକ୍ୟୁଟିଭ୍ ବନ୍ଧୁ ଜଣଙ୍କୁ କହିଲେ, 'ଦେଖୁଛି ଆପଣ ବେଶ୍ ଅଦ୍ଭୁତ ଲୋକ ।' ବୁଢ଼ା ଆଙ୍ଗୁଠିରେ ମୋ ଆଡ଼କୁ ଦେଖେଇ କହିଲେ, 'କାହିଁ ପରିଚୟ ତ କରାଇ ଦେଲେନି ।'

'ଓହ୍ ସରି । ମୋର ବନ୍ଧୁ ଜର୍ଣ୍ଣାଲିଷ୍ଟ, ପପୁଲାର୍‌ଲି ନୋନ୍ ଏଜ୍ ବାଚ୍ଚୁ ।'

'ନମସ୍ତେ । ମୁଁ ମିସ୍ ସୁନୀତା କଟକଟୀୟା ।'

'ଦିଲ୍ଲୀ ଷ୍ଟେସନ୍‌ର ନାମଜାଦା ଆର୍ଟିଷ୍ଟ ।' ବୋଲି ଜଣାଇଲେ ବନ୍ଧୁବର ।

ବାରାଖାମ୍ବା ରୋଡ୍‌ର ବିଖ୍ୟାତ କଟ୍‌କଟୀୟା ପରିବାର ସହିତ ମୋର ପରିଚୟର ତାହାହିଁ ହେଲା ସୂତ୍ରପାତ । ପ୍ରଥମେ ଜାଣିଥିଲି ସୁନୀତାଙ୍କୁ ପ୍ରୋଗ୍ରାମ୍ ନଦେଇ ମୋର ବନ୍ଧୁଙ୍କର ଚାରା ନଥିଲା । ତିନିଶହ ଚାରିଶହ ଟଙ୍କାର କିରାନୀ ପର୍ଯ୍ୟାୟର ସରକାରୀ କର୍ମଚାରୀ ହେଲେ ବି ପ୍ରୋଗ୍ରାମ୍ ଏକ୍‌ଜିକ୍ୟୁଟିଭ୍‌ମାନଙ୍କର ବେଶ୍ ଉପୁରୀ ଆୟ ଅଛି । ଅସଂଖ୍ୟ ଲାଳାୟିତ ଯୁବତୀ ଏମାନଙ୍କର ସ୍ତାବକ, ଅସଂଖ୍ୟ ଧନିକ ନନ୍ଦନନନ୍ଦିନୀ ଏମାନଙ୍କୁ ସନ୍ତୁଷ୍ଟ କରିବାକୁ ସଦା ବ୍ୟଗ୍ର । ଯାଛଡ଼ା ଷ୍ଟୁଡିଓର ରୁଦ୍ଧ କକ୍ଷରେ ଏସମସ୍ତ

ସଖାସଖୀମାନଙ୍କୁ ନେଇ ହୁଏ ରିହୟରସାଲ୍, ପ୍ରୋଗ୍ରାମ୍ ବ୍ରଡ଼କାଷ୍ଟ। ସୁନୀତାଙ୍କ ପରି ବୁଦ୍ଧିମତୀ ଝିଅମାନେ ନିଜ ନିଜ ଗାଡ଼ିରେ ପାଖରେ ବସେଇ ମଝିରେ ମଝିରେ ନେଇଯାନ୍ତି ଆଲୋୟାର୍ ବା ଜୟପୁର, ଆଗ୍ରା ଆଡ଼େ ବି ଘୂରାଇ ଆଣନ୍ତି। ସୁତରାଂ ରଖେ ହରି ମାରେ କିଏ, ମାରେ ହରି ରଖେ କିଏ ? ବାଣିଜ୍ୟ ବ୍ୟବସାୟର ଦୁନିଆରେ ଯେମିତି 'ବାର୍ଟର' ପଦ୍ଧତିରେ ସମାନ ମୂଲ୍ୟର ଜିନିଷପତ୍ରର ଦେବାନେବା ଚଳେ, ସୁନୀତା ଓ ମୋର ବନ୍ଧୁଙ୍କର ଠିକ୍ ସେପରି ସମ୍ପର୍କ ଥିଲା। କିନ୍ତୁ ଏବେ ମୁଁ ବି ମଝିରେ ମଝିରେ ସୁନୀତାଙ୍କ ସାହଚର୍ଯ୍ୟରେ ଇଣ୍ଡିଆଗେଟ୍ ବା ଚାଣକ୍ୟ ପୁରୀ ବା ଓଖ୍ଲା ଆଡ଼େ ଘୂରାଘୂରି କରିବା ଆରମ୍ଭ କରିଦେଇଛି। ମେମ୍ ସାହେବ, ରାଣ ପକଉଛି, ମୋର ପ୍ରକୃତରେ ଇଚ୍ଛା ନଥିଲେ ବି ଏପରି ଉଗ୍ରଯୌବନାଙ୍କ ଅନୁରୋଧକୁ ଉପେକ୍ଷା କରିପାରିନି। ତେବେ ବିଶ୍ୱାସ କର, ଆଲୋୟାରର ସର୍କିଟ୍ ହାଉସ୍‌ରେ ବାସ କରିନି ଗୋଟିଏ ବି ରାତି।

ଦିନେ ସଂଧ୍ୟା ବେଳେ ଚା' ନିମନ୍ତ୍ରଣ ରକ୍ଷା କରିବାକୁ ଯାଇଥିଲି ଦିଲ୍ଲୀର ସେଇ ବିଖ୍ୟାତ କଟକଟୀୟା ହାଉସକୁ। ପ୍ରଥମେ ତ ମୋର ରୋଲ୍‌ସ୍‌ରଏସ୍‌ଟାକୁ ନେଇ ଢୁକିବାକୁ ଲଜ୍ଜା ଲାଗୁଥିଲା। ଗାଡ଼ିକୁ ଗୋଟିଏ କୋଣରେ ଲୁଚେଇ ଦେଇ ବାରଣ୍ଡା ଉପରକୁ ଉଠୁ ଉଠୁ ଉପର ବାରଣ୍ଡାରୁ ତଳକୁ ଝୁଙ୍କିପଡ଼ି ଚିତ୍କାର କଲେ, 'ଜଷ୍ଟ ଏ ମିନିଟ୍।'

ସୁନୀତାର ମୂର୍ତ୍ତି ସେଠାରୁ ଉଭେଇଗଲା ପରେ ବି ମୁଁ ହାଁ କରି ଅନେଇ ରହିଲି।

ଲୋ-କଟ୍ ବ୍ଲାଉଜ୍ ପିନ୍ଧି ସୁନୀତା ଏପରି କଦର୍ଯ୍ୟ ଭାବରେ ଝୁଙ୍କିଥିଲା ଯେ ତା ଦେହର ଅଦର୍ଶନୀୟ ସମ୍ପଦ ବି ଦର୍ଶନୀୟ ହୋଇଥିଲା ମୋର। ସେଇ ଦେଖାର ବିସ୍ମୟକୁ ଭୁଲୁ ନ ଭୁଲୁଣୁ ସୁନୀତା ଲମ୍ଫ ପ୍ରଦାନ କରି କରି ଆସି ମୋ ସାମନାରେ ଉଭା ହେଲା। ସାଲ୍‌ୱାର୍-କମିଜ୍ ବଦଳରେ ଶାଢ଼ୀ ବ୍ଲାଉଜ୍ ପିନ୍ଧିଛି ସୁନୀତା; ଅଧର ଓ ଲଲାଟରେ ରଙ୍ଗିନ୍ ମନର ଇଙ୍ଗିତ। ଗୋଟିଏ ଝଲକରେ ବେଶ୍ ଭଲ ଲାଗିଲା।

'କମ୍ ଅନ୍ ବାଚ୍ଛୁ।'

ଡ୍ରଇଂରୁମ୍‌ର ଗୋଟିଏ କୋଣରେ ବସିଲୁଁ ଦୁହେଁ। ଟ୍ରଲୀ-ଟ୍ରେରେ ଆସିଲା ଖାଦ୍ୟ ଆଉ ଆସିଲା ଚା'। ମୋ କପ୍‌ରେ ଚା' ଢାଳୁ ଢାଳୁ ସୁନୀତା କହିଲା, 'ଆପଣଙ୍କ ପ୍ରଫେସନ୍‌ଟା ଖୁବ୍ ଚମତ୍କାର। ଆଇ ଉଇସ୍ ଆଇ କୁଡ୍ ବିସ୍‌ଏ ଜର୍ଣ୍ଣାଲିଷ୍ଟ।'

'କୋଟିପତି ଧନୀର ସନ୍ତାନ ହୋଇ ରେଡ଼ିଓ ଆର୍ଟିଷ୍ଟ ହେବାର ପ୍ରଫେସନ୍‌ଟା ବି ନିହାତି ଖରାପ ନୁହେଁ, କଣ କହୁଛନ୍ତି ?'

ଟିକିଏ ହସିଦେଲା ସୁନୀତା- 'ଧନୀ ବା ଗରିବ କଥା ନୁହେଁ। ଗୀତ ମୋତେ ଖୁବ୍ ଭଲ ଲାଗେ। ତା'ଛଡ଼ା ଆପଣଙ୍କ ବନ୍ଧୁ ମୋତେ ଖୁବ୍ ଭଲ ପାଆନ୍ତି ବୋଲି ରେଗୁଲାର୍ ପ୍ରୋଗ୍ରାମ୍ ମିଳେ ଏବଂ ପ୍ରାୟ ବାଧରେ ଅଭ୍ୟାସ କରେ।'

'ତା' ନିଶ୍ଚୟ ।'

'ତିନିବର୍ଷ ପୂର୍ବେ ଆକ୍ସିଡେଣ୍ଟାଲି ଆପଣଙ୍କ ବନ୍ଧୁଙ୍କ ସହ ମୋର ପରିଚୟ ହୋଇଥିଲା ଏବଂ ଏଇ ତିନିବର୍ଷ ଭିତରେ ଏକ ଅଦ୍ଭୁତ କର୍ଡ଼ିଆଲ ରିଲେସନ୍ ଗଢ଼ି ଉଠିଛି । ଗାଡ଼ି ଧରି ଯେତେବେଳେ ପାରି ସେତେବେଳେ ଦିନେ ଦୁଇଦିନ ପାଇଁ ଆଉଟିଂରେ ଯିବାଟା ମୋର ହବ୍‌ବି ଏବଂ ଆଇ ଅଲ୍‌ୱେଜ୍ ଟେକ୍ ହିମ୍ ଉଇଥ୍ ମି ।'

ଦକ୍ଷିଣ ଭାରତୀୟଙ୍କ ପରି ମୁଣ୍ଡ ହଲେଇ କହିଲି, 'ଦ୍ୟାଟ୍ସ ଫାଇନ୍' ।

ଏତିକିବେଳେ ବାହାରେ ଗାଡ଼ିର ଶବ୍ଦ ଶୁଣି ସୁନୀତା ଉଠି ଦୌଡ଼ିଗଲା । ମୋ ପଛ ପାଖରୁ ଜଣେ ପ୍ରବୀଣ ବ୍ୟକ୍ତିଙ୍କୁ ଆଣି ଡ୍ରଇଂ ରୁମ୍‌ରେ ପଶି ମୋ ସହିତ ପରିଚୟ କରାଇଦେଲା ।

'ଡାଡି, ଇଏ ସେଇ ସାମ୍ବାଦିକ, ଯାହାଙ୍କ କଥା ମୁଁ ତୁମକୁ କହିଛି ।'

'ଭେରି ଗ୍ଲାଡ୍ ଟୁ ମିଟ୍ ୟୁ ଜର୍ଣ୍ଣାଲିଷ୍ଟ ।'

ଡାହାଣ ହାତ ବଢ଼େଇ ଦେଲେ ସେ । ଦୁହେଁ କରମର୍ଦ୍ଦନ କଲୁଁ ।

କୋଟିପତି ବ୍ୟବସାୟୀ ମିଃ କଟ୍‌କଟୀୟା ମୋ ପାଖରେ ବସି ଚା'ପାନ କଲେ । ପ୍ରଥମ ପରିଚୟରେ ହିଁ ସେ ଖୁବ୍ ଖୁସି ହେଲେ । ଭିତରକୁ ଯିବା ଆଗରୁ କହିଲେ, 'ଏଇଟା କିନ୍ତୁ ଆଳାପର ଆରମ୍ଭ, ଏଣୁ ଏଣିକି ନିୟମିତ ଦେଖାସାକ୍ଷାତ ହେବା ଦରକାର ।' ଶେଷରେ ମନ୍ତବ୍ୟ ଦେଲେ, 'ସୁନୀତା ନେଭର୍ କମିଟ୍‌ସ ମିସ୍‌ଟେକ୍ ଇନ୍ ହର୍ ସିଲେକ୍‌ସନ୍ ।'

ସେଦିନ ଆହୁରି କିଛି ସମୟ ଗପସପ କରି କଟ୍‌କଟୀୟା ଭବନରୁ ବିଦାୟ ନେଲି । କିନ୍ତୁ ଏତେ ଶୀଘ୍ର ପୁଣି ଆସିବାକୁ ପଡ଼ିବ, ତା' ଭାବିନଥିଲି ।

ଦୁଇଦିନ ପରେ ଏକ ଡିପ୍ଲୋମାଟିକ୍ ପାର୍ଟିରେ ମିଃ କଟ୍‌କଟୀୟାଙ୍କ ସହିତ ଦେଖା । ମୋତେ ଦେଖି ବହୁତ ଖୁସି । ପାର୍ଟି ଶେଷ ହେବା ପୂର୍ବରୁ ମୋତେ ନେଇ ଚାଲି ଆସିଲେ– ନେଇଗଲେ ତାଙ୍କର ବାରଖମ୍ବା ରୋଡ୍‌ର ପ୍ରାସାଦକୁ ।

ସେଦିନ ଆଉ ବାହାର ଡ୍ରଇଂ ରୁମ୍‌ରେ ବସିଲୁ ନାହିଁ, ବସିଲୁ ମିଃ କଟ୍‌କଟୀୟାଙ୍କ ଖାସ୍ କମ୍‌ରାରେ । ବସୁ ନବସୁଣୁ ବେହେରା ଆସି ହାଜର ହେଇଗଲା । ମିଃ କଟ୍‌କଟୀୟା ମୋତେ ପଚାରିଲେ, 'ହ୍ୱାଟ୍ ଉଇଲ୍ ୟୁ ହ୍ୟାଭ୍ ? ଜିନ୍ ନା ହୁଇସ୍କି ? ନା ସାମ୍ପେନ୍ ?'

'କଣ ନିହାତି ପିଇବାକୁ ପଡ଼ିବ ?'

'ହ୍ୱାଟ୍ ଡୁ ୟୁ ମିନ୍ ମାଇଁ ବୟ ? ପିଇବେ ନାହିଁ – ପିଇବାକୁ ହିଁ ପଡ଼ିବ ।'

'ଠିକ୍ ଅଛି । ଜିନ୍‌ରେ ଅଳ୍ପ ହୁଇସ୍କି ମିଶେଇ ଆଣିବାକୁ କୁହନ୍ତୁ ।'

ମିଃ କଟ୍‌କଟୀୟା ଡିଆଁ ମାରି କହିଲେ, 'କଙ୍ଗ୍ରାଚୁଲେସନ୍ । ଚମତ୍କାର ଲାଗେ ପିଇବାକୁ, ନୁହେଁ ?'

ଦୁହିଁଙ୍କ ପାଇଁ ଏଇ ଫର୍ମୁଲାରେ ଡ୍ରିଙ୍କ୍ସ୍ ଆସିଲା ।

'ଚିୟର୍ସ ।'

'ଚିୟର୍ସ ।'

କଥାରେ କଥାରେ କେତେବେଳେ ଯେ ମିଃ କଟ୍‌କଟୀୟା ତାଙ୍କର ବାଣିଜ୍ୟ ବ୍ୟବସାୟ କଥା ଆରମ୍ଭ କରିଦେଲେ ତାର ଟେର୍ ପାଇଲି ନାହିଁ । ହଠାତ୍ ମନେହେଲା ମିସେସ୍ କଟ୍‌କଟୀୟାଙ୍କ କଥା କହୁଛନ୍ତି ।

'ଜାଣିଚ ଜର୍ଣ୍ଣାଲିଷ୍ଟ ! ପ୍ରମୀଳା ନଥିଲେ କଟ୍‌କଟୀୟା ବ୍ରଦର୍ସଙ୍କୁ ଆଜି ବି କନଟ୍‌ପ୍ଲେସ୍‌ର ଦୋକାନରେ ହିଁ ରହିଯିବାକୁ ହେଇଥାନ୍ତା । ଯୁଦ୍ଧ ବଜାରରେ ଯେତେବେଳେ ଦିଲ୍ଲୀରେ ବଡ଼ ବଡ଼ ବ୍ରିଟିଶ୍ ଆଉ ଆମେରିକାନ୍ ଜେନେରାଲ୍ ହାଉଜାଉ ହେଉଥିଲେ ସେଇ ସମୟରେ ହଠାତ୍ ପ୍ରମିଳାର ବ୍ରିଗେଡ଼ିୟର୍ ବ୍ରାଉନ୍ ଏବଂ କର୍ଣ୍ଣେଲ୍ ମିଲାରଙ୍କ ସହିତ ପରିଚୟ ହେଲା, ବନ୍ଧୁତ୍ୱ ହେଲା । କିଛିଦିନ ଭିତରେ ସେମାନଙ୍କ ମଧ୍ୟରେ ବନ୍ଧୁତ୍ୱ ବେଶ୍ ଜମିଉଠିଲା । ବିଲିଭ୍ ମି ଜର୍ଣ୍ଣାଲିଷ୍ଟ, ପ୍ରମିଳାର ପାଦ ଆଉ ମାଟିରେ ଲାଗିଲା ନାହିଁ । ମୁଁ ଜିପ୍‌ରେ ଘୂରୁଥାଏ ।'

ବେହେରା ଆଉ ଏକ ରାଉଣ୍ଡର ଅର୍ଡ଼ର ନେବାକୁ ଆସିବାରୁ ମୁଁ କହିଲି, 'ଖାଲି ସାହେବ୍‌ଙ୍କ ପାଇଁ ଆଣ, ମୋର ଆଉ ଦରକାର ନାହିଁ ।'

ଯୁଦ୍ଧ ସମୟର ଦୁଇଚାରିଟା କାହାଣୀ କହୁ କହୁ ସେକେଣ୍ଡ ରାଉଣ୍ଡ ଶେଷ କରି ଥାର୍ଡ଼ ରାଉଣ୍ଡ ପିଇବା ଆରମ୍ଭ କରିଦେଲେ । ଥାର୍ଡ଼ ରାଉଣ୍ଡର ପ୍ରଥମ ଚୁମକ ପେଟ ଭିତରକୁ ପଶୁ ନପଶୁଣୁ ମିଃ କଟ୍‌କଟୀୟାଙ୍କ ମନର ସବୁ ମାଳିନ୍ୟକୁ ଧୋଇଧାଇ ସଫା କରିଦେଲା । ପ୍ରାଣ ଖୋଲି କଥା କହିବା ଆରମ୍ଭ କରିଦେଲେ ଏଥର ।

'ପ୍ରମିଳାର ଚେଷ୍ଟାରେ ହିଁ ମୁଁ ପିଚିଶ ହଜାର ଟଙ୍କାର ଆଡ଼ଭାନ୍ସ ପାଇ ସପ୍ଲାୟର ହେଲି । ତାପରେ ଦିନକୁ ଦିନ ବିଜିନେସ୍ ଭଲ ହେବାକୁ ଲାଗିଲା । ବର୍ଷ ଦେଢ଼ଟା ଭିତରେ କଟ୍‌କଟୀୟା ବ୍ରଦର୍ସ ଟପ୍ ଆର୍ମି ସପ୍ଲାୟର୍ ହେଇଗଲା । ଜାଣିଚ ଜର୍ଣ୍ଣାଲିଷ୍ଟ, ସେତେବେଳେ ମୋର ମରିବାକୁ ବି ଟାଇମ୍ ନଥିଲା । ରୟାଲ୍ ଏୟାରଫୋର୍ସର ପ୍ଲେନ୍‌ରେ ଆଜି କୋହିମା ତ କାଲି ଡିବ୍ରୁଗଡ଼ ତା ପରଦିନ ସକାଳେ କଲିକତା ପୁଣି ଦିଲ୍ଲୀ— ଏମିତି ମାସରେ କୋଡ଼ିଏ ଦିନ ଘୂରି ବୁଲୁଥାଏ ।'

ହାତରୁ ଗ୍ଲାସଟିକୁ ଥୋଇଦେଇ କେଇଟା କାସ୍ୟୁନଟ ପାଟିରେ ପୂରେଇଲେ ମିଃ କଟ୍‌କଟୀୟା । ଚୋବାଉ ଚୋବାଉ ଆହୁରି ବି ଅନେକ କାହାଣୀ ଶୁଣେଇଲେ ସେଦିନ ରାତିରେ । ଶୁଣିଲି ବ୍ରିଗେଡ଼ିୟର୍ ବ୍ରାଉନ୍ ବହୁତଦିନ ମିସେସ୍ କଟ୍‌କଟୀୟାଙ୍କ ସାଙ୍ଗରେ ଗପ କରି କରି ସାରାରାତି କଟେଇ ଦିଅନ୍ତି । କେବେ କେବେ ମିସେସ୍ କଟ୍‌କଟୀୟା ତାଙ୍କର ବାନ୍ଧବୀମାନଙ୍କୁ ସାଙ୍ଗରେ ନେଇ କଲ୍‌ଚରାଲ୍ ଇଭିନିଂ ଅର୍ଗାନାଇଜ୍ କରନ୍ତି ବ୍ରାଉନ୍, ମିଲାର୍ ଏବଂ ସେମାନଙ୍କ ବନ୍ଧୁବାନ୍ଧବଙ୍କୁ ଧରି । ଭାରି ମଜା ହୁଏ ସେଇ ରାତିଗୁଡ଼ିକରେ । ବଡ଼ ବଡ଼ ଅଫିସର୍ ଆନନ୍ଦ ଉଲ୍ଲାସରେ ଶେଷକୁ ଇଣ୍ଡିଆନ୍ ଡ୍ୟାନ୍ସ

ଆରମ୍ଭ କରିଦିଅନ୍ତି ଝିଅମାନଙ୍କ ସହିତ । ସେମାନେ ପାରନ୍ତି ନାହିଁ, କିନ୍ତୁ ଚେଷ୍ଟା କରନ୍ତି । ହଠାତ୍ ପଡ଼ିଯାଉ ଯାଉ ଝିଅମାନଙ୍କୁ ଜାବୁଡ଼ି ଧରି ସମ୍ଭାଳି ନିଅନ୍ତି ନିଜ ନିଜକୁ ।

ସେଇ ରାତିର ପରେ ଏବେ ମୁଁ ମିଃ କଟକଟୀୟାଙ୍କ ଘରକୁ ନାନା କାରଣରୁ ଘନ ଘନ ଯାଉଛି । ଜାଣିନି କାହିଁକି ମିଃ କଟ୍‌କଟୀୟାଙ୍କର ମୋ ପ୍ରତି କେମିତି ଏକ ସମ୍ପାଥି ସୃଷ୍ଟି ହେଲା । ଭଦ୍ରବ୍ୟକ୍ତି ଏତେ ପ୍ରାଣଖୋଲା କଥାବାର୍ତ୍ତା କରନ୍ତି ଯେ ମୋତେ ବି ଭାରି ଭଲ ଲାଗେ ତାଙ୍କୁ ।

ମିସେସ୍ ପ୍ରମିଳା କଟ୍‌କଟୀୟା ଏବେ ଦିଲ୍ଲୀରେ ନାହାନ୍ତି । ସମାଜ ସେବିକାମାନଙ୍କର ଏକ ଦଳକୁ ନେଇ ସୋଭିଏଟ୍ ରୁଷିଆକୁ ଯାଇଛନ୍ତି । ଏଇ ମହିୟସୀ ମହିଳାଙ୍କୁ ମୁଁ ଦେଖିନି, କିନ୍ତୁ ନ ଦେଖିଲେ ବି ତାଙ୍କ ପ୍ରତି ଶ୍ରଦ୍ଧାରେ ମୋର ମଥା ନତ ହୋଇଯାଏ । ଆର୍ମି ଅଫିସରସ ମେସ୍‌ରେ ପ୍ରତି ସଂଧ୍ୟାରେ କଲ୍‌ଚରାଲ୍ ପ୍ରୋଗ୍ରାମ୍ କରି ମିସେସ୍ କଟ୍‌କଟୀୟା ଅନେକ ଝିଅଙ୍କୁ ଓ ସେମାନଙ୍କର ବାପା, ମା, ଭାଇ ଭଉଣୀଙ୍କୁ କେବଳ ଯେ ରକ୍ଷା କରିଛନ୍ତି ତାହା ନୁହେଁ, ପ୍ରାଚୁର୍ଯ୍ୟ ଆଣି ଦେଇଛନ୍ତି ସେମାନଙ୍କ ପରିବାରଙ୍କୁ ।

ବ୍ରିଗେଡ଼ିୟର୍ ବ୍ରାଉନ୍ ବା କର୍ଣ୍ଣେଲ୍ ମିଲାର୍ ଆଜି କୋଉଠି ଅଛନ୍ତି ଜାଣିନି, କିନ୍ତୁ ସତରେ ସେମାନଙ୍କ ପ୍ରତି କୃତଜ୍ଞ ହେବା ଉଚିତ । ସଂସାର ଧର୍ମ ତ୍ୟାଗ କରି, ମୃତ୍ୟୁର ମୁହାଁମୁହିଁ ଛିଡ଼ାହେଇ ସେମାନେ ମଣିଷତ୍ୱକୁ ବିସର୍ଜନ କରିନାହାନ୍ତି । ପ୍ରମୀଳା କଟ୍‌କଟୀୟା ବା ଦିଲ୍ଲୀର ଦଳେ ଝିଅ– ଶିଳ୍ପୀ ଓ ସେମାନଙ୍କର ପରିବାରକୁ କେତେମତେ ସାହାଯ୍ୟ ନ କରିଛନ୍ତି । ମନେ ମନେ ଭାବେ, କେତେ ଗଭୀର ଭାବେ ହିଁ ସେମାନେ ଭଲ ପାଆନ୍ତି ଭାରତୀୟ ଝିଅମାନଙ୍କୁ । ଯୁଦ୍ଧ ସମୟରେ ଯେତେସବୁ ବିଦେଶୀ ସୈନ୍ୟ ଏଇ ଦେଶକୁ ଆସିଥିଲେ, ସେମାନଙ୍କର ନିନ୍ଦା ହିଁ ଶୁଣିଥିଲି ଏତେଦିନ ଯାଏଁ । ମିଃ କଟ୍‌କଟୀୟାଙ୍କଠାରୁ ସେ ଦିନର ଇତିହାସର ଏକ ନୂତନ ଇଙ୍ଗିତ ପାଇ ଅନେକଟା ତୃପ୍ତି ଲାଭ କଲି ।

– ତୁମରି ବାଚ୍ଚୁ ।

ମେମ୍ ସାହେବ,

ବହୁତ ବହୁତ 'ସୁକ୍ରିୟା' । ତୁମର ଫେରିବା ଦିନ ଧୀରେ ଧୀରେ ପାଖେଇ ଆସୁଛି ଜାଣି ଆଜି ଆନନ୍ଦରେ ବିଛଣାରେ ଲୋଟି ପଡ଼ିଲି, ଡ୍ରେସିଂ ଟେବୁଲ୍ ଆଗରେ ଛିଡ଼ା ହୋଇ ଆଲୁବାଲୁ କେଶଗୁଡ଼ିକୁ ଠିକ୍‌ଠାକ୍ କରି ବାରମ୍ବାର ନିଜ ମୁହଁକୁ ଚାହିଁ ଦେଖିଲି । ମନକୁ ମନ ପ୍ରଶ୍ନ ପଚାରିଲି, ଠିକ୍ ଅଛି ତ ? ନା ବିଲାତ ଫେରନ୍ତା ମେମ୍ ସାହେବଙ୍କର ପସନ୍ଦ ହବନି ? ରାଇଟିଂ ଟେବୁଲ୍ ଉପରେ ଥୁଆ ହେଇଥିବା ତୁମର ଫୋଟକୁ ଅନେଇ ଅନେଇ ପ୍ରଶ୍ନ କଲି —– କଣ କହୁଛ କିହୋ, ପସନ୍ଦ ହବଟି ? ନା ବିଲାତରୁ ମନରେ ଏକ ନୂତନ

ରଙ୍ଗ ତୋଳି ଆସିଛ ? ହଠାତ୍ ମନେହେଲା ତୁମେ ପଛରୁ ଆସି ମୋ ଗାଲରେ ଚାପୁଡ଼ାଏ ପକାଇ କହିଲ, ଛି-ଛି ଦେଖୁଛି ତୁମେ ବଡ଼ ଛୋପରା !

ଦେଖ, ଛୋପରା ମୁଁ ହେବାକୁ ଚାହିଁନି । କିନ୍ତୁ କାହିଁକି କେଜାଣି ମୁହୂର୍ତ୍ତକ ପାଇଁ ଭୟ ଲାଗିଲା ମନ ଭିତରେ । କେମିତି କେଜାଣି ଶଙ୍କାକୁଳ ହେଇଗଲି । ସେଇଟା କିଛି ନୁହେଁ, ନୁହେଁ ନା ?

ତାପରେ କ'ଣ କଲି ଜାଣିଛ ? ଆମର ସେଇ ମୋଟା ଆଲ୍‌ବମ୍ ବାହାର କଲି । ମେରୁନ୍ ରଙ୍ଗର ଆଲବମ୍‌ଟାରୁ ତୁମର ସବୁ ପୋଟ୍ରେଟ୍‌ଗୁଡ଼ିକ ଖୋଲିଆଣି ବିଛଣା ଉପରେ ବିଛେଇ ଡିସ୍‌ପ୍ଲେ କରିଦେଲି । ବହୁତ ସମୟଯାଏଁ ତୁମର ସେଇ ସୁନାମୁହଁଟିର ଛବି ଗୁଡ଼ିକୁ ଖୁଣ୍ଟିନାଣ୍ଟି ନିରେଖିଲି । ଦେଖିଲି, ଦୁଷ୍ଟାମୀର ଚିହ୍ନବର୍ଣ୍ଣ କିମ୍ବା କୌଣସି ଲକ୍ଷଣ ନାହିଁ ସେଠି । ତା଼ପରେ ଆନନ୍ଦ ଉଲ୍ଲାସରେ ତୁମର ଫଟୋ ଗୋଟି ଗୋଟିକୁ ଧରି ଅନେକକ୍ଷଣ ଯାଏ ଅନେଇ ଅନେଇ ଗେଲ କଲି । ତୁମେ ଫେରିଆସିଲେ ତୁମ ସହିତ ଦେଖାହେଲେ କାନେ କାନେ କହିବି ଆଉ କଣ କରିଥିଲି ।

ମଥୁରା ଆସି ଏକ ପରେ ଆଉ ଏକ ଆଉ ଏକ— ଏମିତି ତିନି କପ୍ ଚା' ପିଏଇଲା । ତଥାପି ବି ମୋର ଦୁଇଟାଯାକ ଆଲବମ୍ ଦେଖାସରିଲା ନାହିଁ । ତୁମର ସେଇ ଲମ୍ବା ଲମ୍ବା କଅଁଳିଆ ତକିଆ ଦିଟାକୁ ପେଟ ତଳେ ଜାକି ତନ୍ମୟ ହୋଇ ଆମର ସିମଲା-ଟ୍ରିପ୍‌ର ଫଟୋଗୁଡ଼ିକ ଦେଖୁଥିଲି । ଏତିକିବେଳେ ମଥୁରା ଆସି କହିଲା, 'ବାବୁଜୀ, ବେଗର୍ ଦିଦିମଣି ଆପ୍ କୋ ଆଚ୍ଛା ନେଇ ଲାଗ୍‌ତା, ନୁହେଁ ନା ?

ମଥୁରା ଶୁଣି ନପାରିଲା ଭଳି ଧୀରେକିନା ତୁମର ଫଟୋଗୁଡ଼ିକୁ କହିଲି—ଶୁଣୁଛ, ମଥୁରା କ'ଣ କହୁଛି ?

ତାପରେ ମଥୁରାକୁ ଶୁଣେଇ କହିଲି, 'କଣ ଆଉ କରିବି କୁହ, ତୁମର ଦିଦିମଣି କି ଯେ ମନ୍ତ୍ରତନ୍ତ୍ର କରି ମୋତେ ଏମିତି କରିଦେଉଛନ୍ତି, ଆଜିକାଲି ଆଉ କିଛି ଭଲ ଲାଗୁନାହିଁ ।'

'ଦିଦିମଣି କେବେ ଆସିବେ କି ବାବୁଜୀ ?'

'ଶୀଘ୍ର ଆସୁଛନ୍ତି ବୋଲି ତ ଲେଖିଛନ୍ତି । ତେବେ ଠିକ୍ କେବେ ଆସି ପହଞ୍ଚିପାରିବେ ଜାଣିନି ।'

ତୁମର ଆସିବା ଖବରଟା ଶୁଣି ମଥୁରାର ମୁହଁଟା ସାରା ହସ ଖେଳିଗଲା । ତାର ମୁହଁର ହସ, ମନର ଆନନ୍ଦ ମୋର ପ୍ରାଣରେ ବି ବିଛାଡ଼ି ହେଇଗଲା ।

ହାତଘଡ଼ିକୁ ଅନେଇ ଦେଖିଲି, ନ'ଟା । ତଥାପି ଆଉ ଖଣ୍ଡେ ସିଗାରେଟ୍‌ରେ ନିଆଁ ଧରେଇ ତକିଆ ଦିଟାକୁ ଆହୁରି ଜାକିଧରି କଡ଼ ଲେଉଟାଇ ଶୋଇଲି । ଥରେ ଦୁଇଥର ଟାଣି ସ୍ୱପ୍ନ ରାଜ୍ୟକୁ ଯିବା ବାଟରେ ମନକୁ ଗୋଟାପଣେ ଦଶହଜାର ଫୁଟ୍ ଉପରକୁ ଉଠେଇ ଦେଇଥିବା ବେଳେ କବାଟ ଖଡ଼ଖଡ଼ ହେବାର ଶବ୍ଦ ଶୁଣାଗଲା ।

'କିଏ ?'

'ମୁଁ, ରତ୍ନା ଭାଉଜ ।'

ମନେ ମନେ ଭୟଭୀତ ହୋଇପଡ଼ିଲେ ବି ମୁଁ ଚିତ୍କାର କରିଉଠିଲି, 'କମ୍ ଅନ୍ ରତ୍ନା ଭାଉଜ, କମ୍ ଅନ୍ ।'

ଗୋଟିଏ ହାତରେ ସନ୍‌ଗ୍ଲାସଟିକୁ ଖୋଲୁ ଖୋଲୁ ଏବଂ ଅନ୍ୟ ହାତରେ ଦରଜା ଠେଲି ମୋର, ତୁମର ତଥା ଅନ୍ୟାନ୍ୟ ଅସଂଖ୍ୟ ଭାରତବାସୀଙ୍କ 'ରତ୍ନାଭାଉଜ' ଘର ଭିତରେ ପଶିଲେ ।

'କଣ କିହୋ, ନବାବ୍ ପୁତ୍ରଙ୍କର ଏଯାଏଁ ବିଛଣା ଛାଡ଼ ହେଇନି ?'

'ଆଜି ପାର୍ଲିଆମେଣ୍ଟ ନାହିଁ ତ, ଏଣୁ ବାହାରିବାରେ ତରବର ହବାର ନାହିଁ । ସେଇଥିପାଇଁ ଟେଇଁ ଟେଇଁ ଶୋଇ ସ୍ୱପ୍ନ ଦେଖୁଥିଲି ।'

ଭ୍ରୂକୁଞ୍ଚନ କରି, ଓଠକୁ ଆସ୍ତେକିନା କାମୁଡ଼ିଧରି ମୁହଁରେ ହସର ଆଭା ଫୁଟେଇ ରତ୍ନା ଭାଉଜ କହିଲେ, ଦେଖୁଛି 'ତାପସୀ'ର ଭାଗ୍ୟଟା ବେଶ୍ ଭଲ ।

ତାପରେ ସ୍ୱଗତୋକ୍ତି କଲେ, 'ଆଜିଠୁ ତ ଏମିତି, ବାହାହେଲେ କଣ ନକରିବ ଯେ ।'

ମୁଁ କହିଲି, 'କଣ ଆଉ କରିବି, ତୁମେ ଆଉ ସୁବାସ ଭାଇ... ।'

ଆଉ କୁହାଇଦେଲେ ନାହିଁ ଭାଉଜ । କହିଲେ, 'ବାଜୁ, ସବୁବେଳେ ଏମିତି ମାଙ୍କଡାମି- ଫେଚକାମୀ କରିବୁ ନାହିଁ କହିଦଉଛି ।'

ବିଛଣା ଉପରେ ଉଠିବସିଲି । ମୁଣ୍ଡ ବାଳକୁ ଆଙ୍ଗୁଠିରେ ସଜାଡୁ ସଜାଡୁ କହିଲି, 'ଗ୍ରୀକ୍‌ମାନଙ୍କର 'ଏଫ୍ରୋଡାଇଟ୍', ରୋମାନମାନଙ୍କର 'ଭେନସ୍', ଅଜନ୍ତାର 'ମାରକନ୍ୟା', ଭୁବନେଶ୍ୱରର 'ନାୟିକା' ଏବଂ ଲେଟେଷ୍ଟ ରବୀନ୍ଦ୍ରନାଥଙ୍କ 'ଚିତ୍ରାଙ୍ଗଦା' ଯେପରି ପ୍ରେୟସୀ ରୂପେ ଯତ୍ର-ତତ୍ର ସର୍ବତ୍ର ପୂଜିତା, ସୁବାସଭାଇଙ୍କ ନିକଟରେ ତୁମେ ବି ତ ସେମିତି ନିତ୍ୟ ପୂଜିତା । ସେଇଥିପାଇଁ କହୁଥିଲି ତୁମମାନଙ୍କର ପଦାଙ୍କ ଅନୁସରଣ କରି ଜୀବନକୁ ଧନ୍ୟ କରିବାକୁ ଚାହେଁ ।'

'ତାପସୀ ବିଲାତ ଯିବା ପରେ ଦେଖୁଛି ତୁ ସତରେ ଖୁବ୍ ବେଶୀ ବକର ବକର ହେଉଛୁ ।'

ଜିଭ ସାହାଯ୍ୟରେ ଓଠଟିକୁ ଟିକିଏ ଓଦା କରିଦେଇ ଟିକିଏ ଟେରଛା ନଜର ଚାଳି ମନ୍ତବ୍ୟ ଦେଲି, 'ସେ ଥିଲେ ତ ତାଙ୍କ ମୁହଁକୁ ଅନେଇ ଅନେଇ ଦିନ କଟି ଯାଉଥାନ୍ତା, ଆଉ କଣ କରିବାକୁ ସମୟ କୋଉଠୁ ପାଉଥାନ୍ତି ?'

ରତ୍ନା ଭାଉଜ ମୋତେ ମାରି ଗୋଡ଼େଇବାକୁ ଆସିବାରୁ ମୁଁ ଏକା ଡିଆଁକେ ଯାଇ ବାଥ୍‌ରୁମ୍‌ରେ ପଶିଗଲି ।

ଏ ପର୍ଯ୍ୟନ୍ତ ଥଟ୍ଟା କରୁଥିଲି, କିନ୍ତୁ ଏଥର ଟିକିଏ ଟିକିଏ ମନରେ ଡର ପଶିଲା । ରତ୍ନା ଭାଉଜଙ୍କ କଥା ଅଲଗା । ଡର ମାଡ଼ିଲା କାଳେ କଣ କରିବସିବେ, କାଳେ କଣ କହିବେ । ଜାଣିଚ ମେମ୍ ସାହେବ, ଯେଉଁମାନେ ରତ୍ନା ଭାଉଜଙ୍କ ଅତୀତ ବର୍ତ୍ତମାନ ଜାଣନ୍ତି ସେମାନେ ତାଙ୍କୁ ଭୟ ନକରି ରହିପାରିବେ ନାହିଁ ।

ସୁବାସ ଭାଇଙ୍କ ସାଙ୍ଗରେ ରତ୍ନା ଭାଉଜଙ୍କ ବାହାଘର ମୁଁ ଦେଖିନି । ତେବେ ତିନି ଚାରି ବର୍ଷ ପରେ ଷ୍ଟେଟ୍ ଗଭର୍ଣ୍ଣମେଣ୍ଟରୁ ସେଣ୍ଟ୍ରାଲ୍ ଗଭର୍ଣ୍ଣମେଣ୍ଟକୁ ଟ୍ରାନ୍ସଫର ହେଇ ସୁବାସ ଭାଇ ଆସିବାରୁ ରତ୍ନା ଭାଉଜଙ୍କୁ ବଙ୍ଗଦେଶର ନବ ଗ୍ରାମ୍ୟ ବଧୂ ବେଶରେ ଦେଖିବାକୁ ପାଇଥିଲି । ରତ୍ନା ଭାଉଜଙ୍କୁ ପ୍ରଥମଦିନ ଦେଖୁ ଦେଖୁ ବେଶ୍ ଭଲ ଲାଗିଥିଲା । ତେବେ ତାଙ୍କର ଅଙ୍ଗେ ଅଙ୍ଗେ ସର୍ବାଙ୍ଗରେ ଭରି ଭରି ସୁନା ଦେଖି ବୁଝିଥିଲି ରତ୍ନାଭାଉଜଙ୍କ ପାଇଁ ଦିଲ୍ଲୀ ବହୁଦୂର ।

ବର୍ଷେ ପୂରୁ ନପୂରୁଣୁ ଭାରତ ସରକାରଙ୍କ ପକ୍ଷରୁ ବମ୍ବେର ଏକ ବିଖ୍ୟାତ ଶିକ୍ଷ ପ୍ରତିଷ୍ଠାନର ତଦାରଖ କରିବାକୁ ସୁବାସ ଭାଇ ବମ୍ବେ ଗଲେ । ଥରେ ବମ୍ବେରେ ସେମାନଙ୍କର କୋଲାବସ୍ଥିତ ଫ୍ଲାଟକୁ ଯାଇଥିଲି, କିନ୍ତୁ ଦେଖା ପାଇନଥିଲି । ବଟମ୍‌ଡ଼ ଅପ୍-କୋଟ୍-ପିନ୍ଧା ବେହେରା କହିଥିଲା, 'କ୍ଲବ୍‌କୁ ଯାଇଛନ୍ତି ।'

ମୁଁ ଭାବିଲି କେବଳ ସୁବାସଭାଇ ଯାଇଛନ୍ତି । ତେଣୁ କହିଲି, 'ଠିକ୍ ଅଛି, ମେମ୍ ସାହେବଙ୍କୁ କୁହ ବାଚ୍ଛୁ ଆସିଛି ।'

'ମେମ୍ ସାହେବ ଭି କ୍ଲବ୍ ମେ...'

ବ୍ୟସ୍ତ ଥିଲି । ଏଣୁ କାଳ ବିଳମ୍ବ ନକରି ସିଡ଼ିରୁ ଓହ୍ଲେଇ ଆସୁ ଆସୁ ନିଜ ମନକୁ ପ୍ରଶ୍ନ କରୁଥିଲି, 'ରତ୍ନା ଭାଉଜ' କ୍ଲବକୁ ଯାଇଛନ୍ତି ? ନିଜ ପ୍ରଶ୍ନର ଉତ୍ତର ନିଜେ ନିଜେ ଦେଲି, ହୁଏତ ଦିନେ ଅଧେ ପାଇଁ ଯାଇଛନ୍ତି, ସେଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ?

ଦୁଇବର୍ଷ କଟିଗଲା । ସୁବାସ ଭାଇ-ରତ୍ନା ଭାଉଜଙ୍କ କିଛି ଖବର ମିଳିନାହିଁ । ହଠାତ୍ ଦିନେ ସଂଧ୍ୟା ବେଳେ ଇଣ୍ଡିଆ ଗେଟ୍ ପାଖରେ ଟ୍ରାଫିକ୍ ସିଗ୍‌ନାଲ ପଏଣ୍ଟରେ ମୋ ଗାଡ଼ି ପାଖକୁ ଲାଗି ଏକ ଫିଆଟ୍, ଗାଡ଼ିର ଷ୍ଟିୟରିଂରେ ରତ୍ନା ଭାଉଜଙ୍କୁ ଦେଖିଲି । ଦୁଇ ଚାରିଥର ହର୍ଣ୍ଣ ବଜେଇ ବାହାରକୁ ମୁହଁ କାଢ଼ି ମୁଁ ଡାକ ପକେଇଲି, 'ରତ୍ନା ଭାଉଜ !'

ସନ୍‌ଗ୍ଲାସ୍ ଭିତରୁ ମୋତେ ହୁଏତ ପ୍ରଥମେ ଚିହ୍ନିବାକୁ କଷ୍ଟ ହେଇଥିଲା, ମନରେ ହୁଏତ ଟିକିଏ ଖଟ୍‌କା ଲାଗିଲା । କିନ୍ତୁ ଖଟ୍‌କା ଦୂର ହେବାକୁ ସମୟ ଲାଗିଲା ନାହିଁ । ସେ ଚିତ୍କାର କରି ଉଠିଲେ– 'ବାଚ୍ଛୁ କିରେ ! କେମିତି ଅଛୁ ?'

ମୁହଁକୁ ଲମ୍ବେଇ ଆହୁରି ହୁଏତ କଣ କରିବାକୁ ଆରମ୍ଭ କରୁଥିଲେ । କିନ୍ତୁ ଯା ଭିତରେ ସାମନାର ଲାଲବତୀ ସବୁଜକୁ ବଦଳି ଯାଇଛି ଏବଂ ପଛରେ ଗାଡ଼ିଗୁଡ଼ିକ ଧୈର୍ଯ୍ୟ ହରାଇ ବେତାଳିଆ ହର୍ଣ୍ଣରେ କାନରେ ଅତଡ଼ା ପକାଉଛନ୍ତି । ମୁଁ ଶୀଘ୍ର ଶୀଘ୍ର ରାସ୍ତା ପାରି କରି ଗାଡ଼ି ରଖିଲି । ପରେ ପରେ ରତ୍ନା ଭାଉଜଙ୍କ ଗାଡ଼ିଟା ଆସି ମୋରି ପାଖରେ ଠିଆ ହେଲା ।

ରତ୍ନା ଭାଉଜଙ୍କୁ ସେଦିନ ସଂଧ୍ୟାର ପ୍ରାରମ୍ଭରେ ଇଣ୍ଡିଆ ଗେଟ୍‌ର କଡ଼ରେ ଅସ୍ତଗାମୀ ସୂର୍ଯ୍ୟଙ୍କ ମୁହାଁମୁହିଁ ଦେଖି ମୋର ମନ ବିସ୍ମୟରେ ଭରିଯାଇଥିଲା । ଦୁଇବର୍ଷ

ଭିତରେ ଏତେ ପରିବର୍ତ୍ତନ ! ଆଗକାର ଦିନ ଭଳି ନାନା ଡିଜାଇନର୍ ଗଦାଗଦା ସୁନାର ଗହଣା କାହିଁ ? ଡାହାଣ ହାତରେ ଗୋଟେ ବଡ଼ ଘଡ଼ି, ବାସ୍ । ଉପରକୁ ନଜର ପଡ଼ିଲାରୁ ଜାଣିଲି ଗଳାରେ ସରୁ ଚେନ୍ ସହିତ ବିରାଟ ଏକ ଲକେଟ୍ ଏବଂ ସେଇଟା ବି ଅନ୍ତରର ଗଭୀରତମ ପ୍ରଦେଶରେ ଲୁଚକାଳି ଖେଳୁଥାଏ । ଆରେ ସେଇ ମସ୍ତବଡ଼ ଖୋସାଟି କାହିଁ ? ନାଁ ସେଇଟା ବି ନାହିଁ । କାଟିଛାଣ୍ଟି ସାଇଜ୍ କରାଯାଇଛି ଆଉ ବେଶ୍ ଫୁଲିଉଠିଛି କେଶଗୁଚ୍ଛ । ଏମିତି ପତଳା ତନ୍ତବୁଣା ଶାଢ଼ି ଓ ବ୍ଲାଉଜ୍ ପିନ୍ଧିଥିଲେ ଯେ ଭିତରର ସିଲ୍‌ହଟ୍ ମୂର୍ତ୍ତିଟା ଯେକୌଣସି ପୁରୁଷର ଶିରପୀଡ଼ା ନହେଲେ ବି ମର୍ମପୀଡ଼ାର ନିଶ୍ଚିତ କାରଣ ହେଇପାରେ ।

ମୋ ଆଖିରେ ବୋଧହୁଏ ଦୁଷ୍ଟାମୀର ହସଟିକିଏ ଉକୁଟି ଉଠିଲା । ରତ୍ନା ଭାଉଜ ଏଥର ରଙ୍ଗିନ୍ ଅଧରରେ ହସର ରେଖା ଫୁଟେଇ କହିଲେ, 'କିରେ ବାବୁ, କଥା କହୁନୁ ଯେ ।'

'ତୁମେ ତ ଆଜିକାଲି ରତ୍ନା ଅପା ନୁହଁ, ରତ୍ନାଭାଉଜ ହେଇଛ । ସେଇଥିପାଇଁ ତୁମକୁ ଏକ୍ସରେ ଦୃଷ୍ଟିରେ ଦେଖୁଥିଲି ।'

ଯାପରେ ସୁବାସ ଭାଇ ଆଉ ଦିଲ୍ଲୀର ବାହାରକୁ ଯାଇନଥିବାରୁ ରତ୍ନା ଭାଉଜଙ୍କ ସହିତ ମୋର ଯୋଗାଯୋଗଟା ବେଶ୍ ଘନ ଘନ ହେବାକୁ ଆରମ୍ଭ କଲା । ମଝିରେ ମଝିରେ ହୋଟେଲରେ, ରେଷ୍ଟୁରେଣ୍ଟରେ ବା ଡିପ୍ଲୋମାଟିକ୍ ପାର୍ଟିରେ ବି ଦେଖା ହୁଏ । ସୁବାସ ଭାଇ ଭାରତ ସରକାରଙ୍କର ଜଣେ ଉଚ୍ଚ ମହଲର କ୍ଷମତାସମ୍ପନ୍ନ ଅଫିସର୍ । ସେ ତାଙ୍କର ନିଜର ଆଭିଜାତ୍ୟ ଓ ଗାମ୍ଭୀର୍ଯ୍ୟ ରକ୍ଷା କରି ଚଳନ୍ତି । କିନ୍ତୁ ରତ୍ନା ଭାଉଜ ତାଙ୍କ ରତ୍ନ ସମ୍ଭାରର ପ୍ରଦର୍ଶନୀ ଧରି ଖୁବ୍ ବେଶୀ ଚଳନ୍ତିକା ହୋଇଉଠିଥିଲେ । ମୋତେ କାହିଁକି କେଜାଣି ଟିକିଏ ଖଟ୍‌କା ଲାଗେ, ମନଟା କେମିତି କେମିତି ହୁଏ । ବହୁତ ଦିନ ପରେ ରତ୍ନା ଭାଉଜଙ୍କର ରହସ୍ୟ ଜାଣିବାକୁ ପାଇଲି ସୁବାସ ଭାଇଙ୍କ ଜଣେ ସହକର୍ମୀଙ୍କ ପତ୍ନୀଙ୍କଠୁ ।

ଏହ୍ଲାବାଦରୁ ଦିଲ୍ଲୀ ଆସିବା ସମୟରେ ଅକସ୍ମାତ୍ ମିସେସ୍ ମଦନଲାଲ୍‌ଙ୍କ ସହିତ ଦେଖା ହେଲା । ତାଙ୍କ ସହିତ ପୁରୁଷ ଓ ଅଭିଭାବକ ରୂପେ ଥିଲା ସାତଆଠ ବର୍ଷ. ବୟସର ନାତିଟିଏ । ମୋତେ ଦେଖି ଭଦ୍ରମହିଳା ଖୁବ୍ ଖୁସି ହେଇଗଲେ । କହିଲେ, 'ଭାବୁଥିଲି ଦିନଟା ସାରା କାଟିବି କିପରି । ଯାହାହେଉ, ତୁମକୁ ପାଇ ସେଇ ଭୟ କଟିଗଲା ।'

ମିସେସ୍ ମଦନ ଲାଲଙ୍କଠୁ ଶୁଣିଲି, ଝିଅ ଜ୍ୱାଇଁଙ୍କୁ ଦେଖିବାକୁ କଲିକତା ଯାଇଥିଲେ । ଦଶଦିନ ଖଣ୍ଡେ ରହି ନାତିକୁ ଧରି ଦିଲ୍ଲୀ ଫେରୁଛନ୍ତି ।

ମିଃ ମଦନଲାଲ ଓ ସୁବାସ ଦାଦା ଭାରତ ସରକାରଙ୍କର ଗୋଟିଏ ମିନିଷ୍ଟ୍ରୀରେ ବହୁକାଳ ଧରି କାମ କରିଛନ୍ତି । ସମ୍ପ୍ରତି ମିଃ ମଦନଲାଲ୍ ସ୍ପେଶାଲ୍ ସେକ୍ରେଟାରୀ ହେଇ ଅନ୍ୟ ମିନିଷ୍ଟ୍ରୀକୁ ଚାଲିଯାଇଥିଲେ ବି ସୁବାସ ଭାଇ ଓ ରତ୍ନା ଭାଉଜଙ୍କ ସହିତ ଏମାନଙ୍କର

ଯଥେଷ୍ଟ ଘନିଷ୍ଠତା ରହିଛି । ସେଦିନ କାଲ୍‌କା ମେଲ୍‌ରେ ଚଢ଼ି ଏହ୍ଲାବାଦରୁ ଦିଲ୍ଲୀ ଆସିବା ବାଟରେ ରତ୍ନା ଭାଉଜଙ୍କ କଥା ଶୁଣିଥିଲି ।

ଟ୍ରାଡ଼ିସନାଲ୍ ବଙ୍ଗାଳୀ ଘରର ବୋହୂ ରତ୍ନା ଭାଉଜଙ୍କୁ ବମ୍ବେରେ ଚିହ୍ନେଇ ଥିଲେ ମିସ୍ ପାରାଞ୍ଜପେ । ଦୁଇଥର ବିବାହ କରି ଏବଂ ଦୁଇଥର ବିବାହ ବିଚ୍ଛେଦ କରି ମିସ୍ ପାରାଞ୍ଜପେ ପୁଣି ତୃତୀୟଥର ପାଇଁ କୁମାରୀ ଜୀବନକୁ ଫେରିଆସିଛନ୍ତି । ତୃତୀୟଥର କୁମାରୀ ଜୀବନକୁ ଫେରି ମିସ୍ ପାରାଞ୍ଜପେ ଯେଉଁ ଫାର୍ମରେ ରିସେପ୍‌ସନିଷ୍ଟ ଚାକିରି କରିଥିଲେ, ଭାରତ ସରକାର ସେହି ଫାର୍ମରେ ତଦାରଖର ଭାର ଦେଇଥିଲେ ସୁବାସ ଭାଇଙ୍କୁ । କିଛିଦିନ ଏଇ ଫାର୍ମରେ ଚାକିରି କରିବା ପରେ ବାଣିଜ୍ୟ ବ୍ୟବସାୟ ଦୁନିଆର ଗୁପ୍ତ ରହସ୍ୟର ଇଙ୍ଗିତ ପାଇଥିଲେ ମିସ୍ ପାରାଞ୍ଜପେ । ଏଭଳି ଏକ ଶୁଭ ମୁହୂର୍ତ୍ତରେ ଆଳାପ ହୁଏ ରତ୍ନା ଭାଉଜଙ୍କ ସହିତ ।

ରତ୍ନାଭାଉଜଙ୍କର ନିଃସଙ୍ଗ ଜୀବନର ଏକମାତ୍ର ବାନ୍ଧବୀ ହେଇଗଲେ ମିସ୍ ପାରାଞ୍ଜପେ । ଏଇ ବାନ୍ଧବୀଙ୍କ ଅନୁରୋଧରେ କ୍ରମେ କ୍ରମେ ସେ ମୁଣ୍ଡରୁ ଓଢ଼ଣା ଉତାରିଲେ, ବ୍ଲାଉଜର ହାତକୁ କାଟିଲେ, ଭଳିକି ଭଳି ଡିଜାଇନ୍ ବଦଳେଇ ଚାଲିଲେ, 'ଶିଥିଳ କବରୀ'ର ସମସ୍ୟାକୁ ଦୂର କରିବା ପାଇଁ କଲେ ବବ୍‌ହେୟାର୍ । ବର୍ଷଟିଏ ପୂରୁ ନ ପୂରୁଣୁ ରତ୍ନା ଭାଉଜଙ୍କ ନବଜନ୍ମ ହେଲା ମିସ୍ ପାରାଞ୍ଜପେଙ୍କ ହାତରେ । ଲଲାଟରୁ ରକ୍ତବର୍ଣ୍ଣର ଟୀପା ଉଡ଼ିଲା ସିନା ହେଲେ ଅଧର ହୋଇଉଠିଲା ନାଲି । ଆଖିରେ କାଳିମାର ସ୍ପର୍ଶ ତାର ଲାଳିତ୍ୟକୁ ବଢ଼େଇଦେଲା । କେବଳ ସେତିକି ନୁହେଁ । ରତ୍ନା ଭାଉଜ ଇଂରେଜୀ ଭାଷାକୁ ଛାଡ଼ି ବାକିସବୁ ଭାଷାକୁ ବର୍ଜନ କଲେ । ସମାଜର ବିଭିନ୍ନ ସ୍ତରରେ ମିଳାମିଶା କରି ଅର୍ଥ ଏବଂ ପ୍ରତିପତ୍ତି ପ୍ରତି ତାଙ୍କର ଦୁର୍ବାର ଆକର୍ଷଣ ବଢ଼ି ଚାଲିଲା ।

ୟା ଭିତରେ ମିସ୍ ପାରାଞ୍ଜପେ ଚାକିରି ଛାଡ଼ି ବ୍ୟବସାୟ କରିବାର ସବୁପ୍ରକାର ଉଦ୍ୟୋଗ-ଆୟୋଜନ ସମ୍ପୂର୍ଣ୍ଣ କରି ରତ୍ନା ଭାଉଜଙ୍କ ଆଗରେ ପ୍ରସ୍ତାବ ବାଢ଼ିଲେ, 'ଚାଲୁନାହାନ୍ତି ଆମେ ଗୋଟେ କିଛି କରିବା ।'

ରତ୍ନା ଭାଉଜ ବେଶ୍ ଲମ୍ଫ ପ୍ରଦାନ କଲେ । ଦୁହେଁ ମିଶି ଏକ ବିଖ୍ୟାତ ଇନ୍‌ସ୍ୟୁରାନ୍‌ସ କମ୍ପାନୀର ଏଜେନ୍ସୀ ନେଲେ । ସୁବାସ ଭାଇଙ୍କ ପ୍ରତିପତ୍ତି ତଥା ଏଇ ଦୁଇ ସର୍ବାଧୁନିକାଙ୍କ ଐକାନ୍ତିକ ପ୍ରଚେଷ୍ଟାରେ ପ୍ରଥମ କେସ୍‌ଟି ମିଳିଲା ଚାରିମାସ ଭିତରେ - ବରୋଦାର ଓ୍ୱେଷ୍ଟର୍ଣ୍ଣ ଇଲେକ୍ଟ୍ରିକ୍ କମ୍ପାନୀର ନୂତନ କାରଖାନାଟି ଇନ୍‌ସିଓର୍ଡ଼ ହେଲା ଦେଢ଼କୋଟି ଟଙ୍କାରେ ।

ଜୁହୁ ବିଚ୍‌ରେ କଟେଜ୍ ଭଡ଼ା ନେଇ ପାର୍ଟି ଦେଲେ ରତ୍ନା ଭାଉଜ ଓ ମିସ୍ ପାରାଞ୍ଜପେ- ସେଲିବ୍ରେଟ୍ କଲେ ସେମାନଙ୍କର ପ୍ରଥମ ଶିକାର । ଗଣ୍ୟମାନ୍ୟ ରଥୀମହାରଥୀ ଅନେକ ଆସିଥିଲେ ସେଇ ପାର୍ଟିକୁ । ଏମାନେ ସମସ୍ତେ 'ବାହାବା' ଦେଉଥିଲେ ଏଇ ଦୁଇ ମହୀୟସୀ ନାରୀଙ୍କୁ ।

ସେଇ ପାର୍ଟିରେ ଯେଉଁ କୁନ୍ଦନ ଲାଲ୍‌ଙ୍କ ସହିତ ଦ୍ୱିତୀୟ ଥର ପାଇଁ ଆଳାପ ହୋଇଥିଲା, ତାଙ୍କ ସହିତ ଘନିଷ୍ଠତା ହେଲା ରେସ୍‌କୋର୍ସ ପଡ଼ିଆରେ ରତ୍ନା ଭାଉଜଙ୍କ ଓ ମିସ୍ ପାରାଞ୍ଜପେଙ୍କର । ରତ୍ନା ଭାଉଜଙ୍କର ଟିପ୍‌ସର ଟ୍ରିପଲ୍‌ଟୋଟ୍‌ରେ ଖେଳ ଖେଳି କୁନ୍ଦନଲାଲ ଏକ ଶନିବାରର ବାର୍ ବେଳରେ ପ୍ରାୟ ଛତିଶ ହଜାର ଟଙ୍କା ପାଆନ୍ତି । ସେଇଦିନଠୁ ରତ୍ନା ଭାଉଜଙ୍କ ଉପରେ ତାଙ୍କର ଅଗାଧ ଶ୍ରଦ୍ଧା । ସେଇ ଶ୍ରଦ୍ଧାର ପ୍ରିମିୟମ୍ ପାଉ ପାଉ ବିତିଗଲା ଆଠଟି ମାସ । ଆଠମାସ ପରେ ଏକ ପରମ ଶୁଭଲଗ୍ନରେ କୁନ୍ଦନଲାଲଙ୍କର ନାସିକ୍ କାରଖାନା ଇନ୍‌ସିଓର୍ଡ଼ ହେଲା ପଞ୍ଚସ୍ତରୀ ଲକ୍ଷ ଟଙ୍କାରେ ।

ଦେଢ଼ବର୍ଷ ଭିତରେ ମୋଟ ସାଢ଼େ ଚାରିକୋଟି ଟଙ୍କାର କେଶ୍ ପାଇଥିଲେ ଏ ଦୁଇଜଣ । ଏହାପରେ ସୁବାସ ଭାଇଙ୍କର ଦିଲ୍ଲୀ ବଦଳି ହେଲା ଏପରି ଏକ ଡିପାର୍ଟମେଣ୍ଟକୁ ଯେ ରତ୍ନାଭାଉଜଙ୍କ କାମ ପାଇଁ ଆହୁରି ବେଶୀ ସୁବିଧା ମିଳିଗଲା । ନୂଆ କାରଖାନା ପାଇଁ ଫରେନ୍ କୋଲାବରେସନ୍ ଏବଂ ଫରେନ୍ ଏକ୍ସଚେଞ୍ଜ ପାଇବାକୁ ହେଲେ ଦରଖାସ୍ତ ଉପରେ ସୁବାସ ଭାଇଙ୍କ ଅଟୋଗ୍ରାଫ୍ ଏକାନ୍ତ ଆବଶ୍ୟକ । ଏସବୁ କାର୍ଯ୍ୟ ପାଇଁ ବହୁତ ଆଳାପ ଆଲୋଚନା ଆବଶ୍ୟକ ପଡ଼ିଥାଏ । ଅଫିସ୍‌ରେ ସମୟ ନ ମିଳିଲେ ଅନେକ ଆବେଦନକାରୀଙ୍କୁ ସୁବାସ ଭାଇଙ୍କ ବଙ୍ଗଳାକୁ ଆସିବାକୁ ପଡ଼ିଥାଏ । ଏମାନେ ପ୍ରାୟ ରତ୍ନା ଭାଉଜଙ୍କର ଔଜ୍ଜ୍ୱଲ୍ୟ ତଥା ବ୍ୟବହାରରେ ମୁଗ୍ଧ ହୋଇଥାନ୍ତି । ଏହି ସୂତ୍ରରେ ରତ୍ନା ଭାଉଜଙ୍କର ଇଣ୍ଡିପେଣ୍ଡେଣ୍ଟ ବିଜିନେସ୍ ବେଶ୍ ଭଲରେ ଚାଲିଲା ।

ରତ୍ନା ଭାଉଜଙ୍କର ଏସବୁ ଇତିହାସ ମୁଁ ଜାଣିଥିଲି ବୋଲି ସେଦିନ ହଠାତ୍ ମୋ ବସାରେ ହାଜର ହେବାରୁ ସନ୍ଦେହ ହେଲା । ବାଥ୍‌ରୁମ୍‌ରୁ ବାହାରୁ ବାହାରୁ ପାଦଟା କମ୍ପୁଥିଲା । ଦୁର୍ଗାନାମ ସ୍ମରଣ କରିକରି ବାହାରୁ ବାହାରୁ ସିଧାସଳଖ ପଚାରିଲି, 'କୁହ ଭାଉଜ, କି ମତଲବରେ ଆଜି ଏଇ ସୁପ୍ରଭାତରେ ତୁମର ଆବିର୍ଭାବ ?'

ରତ୍ନା ଭାଉଜ ଅସଂଯତ ଭାବେ କିଛିଟା ଅପ୍ରସ୍ତୁତ ଅବସ୍ଥାରେ ବସିଥିଲେ । ଦେଖିବାକୁ ଖରାପ ଲାଗୁନଥିଲା । ତଥାପି ଟିକିଏ ଆକଟ କରି କହିଲି, 'ଠିକ୍‌ରେ ବସୁନା, କୁହ ତ କଥା କଣ ?'

'ଆଃ ! ଡୋଣ୍ଟ୍ ବି ସିଲ୍ଲି ବାବୁ ।'

ଶେଷରେ ବେଶ୍ ବନେଇଚୁନେଇ ପଚାରିଲେ, 'ତୋ ସହିତ ମିନିଷ୍ଟର ଭରଦ୍ୱାଜଙ୍କ ତ ବେଶ୍ ପଟୁଛି । ଗୋଟେ କାମ କରିବାର ଅଛି । କରିଦବୁ ନା ?'

'କରିବାର କାମ ହେଲେ ନିଶ୍ଚୟ କରିବି ।'

ରତ୍ନା ଭାଉଜ ଜଣାଇଲେ, 'ନୂଆ ନୂଆ ଇଣ୍ଡଷ୍ଟ୍ରି ପାଇଁ ୱେଲଫାୟାର୍ ପ୍ରୋଗ୍ରାମ୍ ଇଭାଲୁଏସନ୍ କମିଟି ଆପଏଣ୍ଟ କରାଯାଉଛି । ସେଇଥିପାଇଁ କହୁଥିଲି କଣ କି, ତୁ ଯଦି ଟିକିଏ ଭରଦ୍ୱାଜ ସାହେବଙ୍କୁ କହିଦିଅନ୍ତୁ ।'

'ସେସବୁ ପଛ କଥା । ଏଣେ ତିନିଲକ୍ଷ ସାଢ଼େ ତିନିଲକ୍ଷ ଟଙ୍କାରେ ଫ୍ରେଣ୍ଡସ୍ କଲୋନୀରେ ଘର କିଣିଲ; ସୁବାସ ଭାଇଙ୍କ ସାଙ୍ଗରେ ଯାଇ ଜାପାନ ଘୂରି ଆସିଲଣି- ଏସବୁ କେବେ ସେଲିବ୍ରେଟ୍ କରିବ ଭାଉଜ ?'

ରତ୍ନା ଭାଉଜ ହାତ ବଢ଼େଇ ମୋତେ ଟାଣିନେଇ ତାଙ୍କର କଅଁଳ ଛାତିରେ ଜାବୁଡ଼ି ଧରିଲେ ଏବଂ କହିଲେ, 'ଏନି ଡେ ୟୁ ଲାଇକ୍, ମାଇଁ ବୟ । ମୋ ସୁନାଟା ପରା କାମଟା କରିଦେ ।'

ତା'ପରଦିନ ରତ୍ନା ଭାଉଜ ଗୋଟେ ଗ୍ରାଣ୍ଡ ଡିନର ଖୁଆଇଲେ, ନାଇଟ୍ ସୋ ସିନେମା ଦେଖେଇଲେ । ମୁଁ ପ୍ରତିଶ୍ରୁତି ଦେଲି ଯଥାସାଧ ଚେଷ୍ଟା କରିବି ବୋଲି । ରତ୍ନା ଭାଉଜ ଏପରି ଏକ କମିଟିର ମେମ୍ବର ହେଲେ ଆହୁରି ଅନେକ ନୂଆ ନୂଆ ଶିଳ୍ପପତିଙ୍କ ସମ୍ପର୍କରେ ଆସିବେ ଏବଂ ତାଙ୍କର ବ୍ୟବସାୟର କ୍ଷେତ୍ର ପ୍ରସାରିତ ହେବାର ବହୁତ ସମ୍ଭାବନା । ତା'ଛଡ଼ା ସୋସିଆଲ୍ ୱାର୍କର ରତ୍ନା ଭାଉଜଙ୍କୁ ପରିଚୟ କରାଇବା ପାଇଁ ମୋର ଆଦୌ ଆଗ୍ରହ ନଥିଲା । ସେଥିପାଇଁ ଭରଦ୍ୱାଜଙ୍କୁ ମୁଁ ଅନୁରୋଧ କରିନାହିଁ ।

ମାସେ ପରେ ସେଇ କମିଟି ବାବଦରେ ଭରଦ୍ୱାଜଙ୍କଠାରୁ ଖବର ନେଲି — ଜାଣିଲି ସମାଜସେବିକା ରତ୍ନା ଭାଉଜ ମଧ ସେଥିରେ ସ୍ଥାନ ପାଇଛନ୍ତି । ଭରଦ୍ୱାଜଙ୍କ ବସାରୁ ଫେରି ଆସି ରତ୍ନାଭାଉଜଙ୍କୁ ଟେଲିଫୋନ୍ କରି ଜଣେଇଲି, 'ତୁମର ହେଇଗଲା ତ ।'

ରତ୍ନା ଭାଉଜ କେବଳ ମୋ ଉପରେ ନିର୍ଭର କରିନଥିଲେ, ତଥାପି ଧନ୍ୟବାଦ ଜଣେଇଲେ ।

ଜାଣିଛ ମେମ୍ ସାହେବ, ସୁବାସ ଭାଇଙ୍କ ଖ୍ୟାତି ଭାରତ ସରକାରଙ୍କ ସର୍ବତ୍ର ବିଛେଇ ହେଇଯାଇଛି । ମିନିଷ୍ଟର୍ ବହୁତଥର ପାର୍ଲାମେଣ୍ଟରେ ସୁବାସ ଭାଇଙ୍କ କର୍ମନିଷ୍ଠା ଓ ନୈପୁଣ୍ୟର ପ୍ରଶଂସା କରିଛନ୍ତି । କିନ୍ତୁ ରତ୍ନା ଭାଉଜଙ୍କ କାହାଣୀ କେହି ଜାଣନ୍ତି ନାହିଁ । ବାହାର ଦୁନିଆରେ ସେ ହେଉଛନ୍ତି ଜଣେ ସଚ୍ଚୋଟ ଅଫିସରଙ୍କ ସ୍ତ୍ରୀ ଏବଂ ସ୍ୱନାମଧନ୍ୟ ସମାଜସେବିକା । ବମ୍ବେର ମାଲବାର୍ ହିଲ୍ସରେ ଏକ ଫ୍ଲାଟ୍‌ରେ ଯେଉଁ ମିସ୍ ପାରାଞ୍ଜପେ ରହନ୍ତି, ତାଙ୍କ ସଙ୍ଗେ ରତ୍ନା ଭାଉଜଙ୍କର ଏକାତ୍ମତାର କାହାଣୀ କଣ ଦୁନିଆ କେବେ ବି ଜାଣିବ ନାହିଁ ? ହୁଏତ 'ନା', କାରଣ ଏଇମାନେ ତ ଆମର ଅଭିଭାବକ ! ଏଇମାନେ ତ ଆମର ସମାଜସେବାର ପୁରୋଧା ।

— ତୁମରି ବାଛୁ

ମେମ୍ ସାହେବ,

ଜୀବନର ଏକ ଶୁଭ ମୁହୂର୍ତ୍ତରେ ତୁମେ ଓ ମୁଁ ପରସ୍ପରକୁ ମିଳିଥିଲେ । ଉଦ୍ଦାମ ଉନ୍ମତ୍ତା ପଦ୍ମା ସଦୃଶ ମୋ ଜୀବନରେ ତୁମେ ଭାଗିରଥୀର ପ୍ରଶାନ୍ତ ପବିତ୍ରତା ଆଣିଦେଲ । ଏବଂ ଆଜି ଭଳି ଏମିତି ଏକ ଶରତ ପ୍ରାରମ୍ଭରେ ସହରଠାରୁ ବହୁ

ଦୂରରେ ତୁମେ ଓ ମୁଁ ପ୍ରଥମଥର ପାଇଁ ଏକାତ୍ମ ହୋଇଥିଲେ ମରୁଭୂମି ରାଜପୁତାନାର ଐତିହାସିକ ପ୍ରାଣକେନ୍ଦ୍ର ଉଦୟପୁରର ରେଷ୍ଟହାଉସ୍‌ରେ । ରେଷ୍ଟ ହାଉସ୍‌ର ଝରକାବାଟେ ସେଦିନ ଦେଖୁନଥିଲି କେବଳ ରାଣାପ୍ରତାପଙ୍କ ପ୍ରାସାଦ, ଦେଖୁଥିଲି ତୁମକୁ — ଦେଖୁଥିଲି ସ୍ୱପ୍ନ । ରାଜପୁତନାର ରୁକ୍ଷ ବାଲୁକା ପ୍ରାନ୍ତରରେ ସେଦିନ ଦୁଇଟି ଜୀବନପଦ୍ମ ଜୀବନ-ସୂର୍ଯ୍ୟର ପରଶରେ ଦୋଳାୟିତ ହେଉଥିଲେ । ମନେପଡୁଛି ସେଇ ଐତିହାସିକ ଶାରଦୀୟ ସଂଧ୍ୟାରେ ଲେକ୍‌ର ଜଳରେ ଆମର ନୌକା ବିହାର ? ମନେପଡୁଛି ସେଦିନ ସଂଧ୍ୟାରେ ଆମ ଜୀବନର ଦ୍ୱୈତ ସଙ୍ଗୀତ ସର୍ବ ପ୍ରଥମେ ଏକ ସୁରରେ ଏକ ମନ୍ତ୍ରରେ ବାଜି ଉଠିଥିଲା ?

ମେମ୍ ସାହେବ, ତୁମେ ପାଖରେ ଥିଲେ ସେଦିନର ସ୍ମୃତି ଆଜି ମୋତେ ଏମିତି ପାଗଳ କରୁନଥାନ୍ତା । କିନ୍ତୁ ମୋ ଜୀବନ ଆକାଶରେ ତୁମେ ଉଦୟ ହେବା ପରଠାରୁ ଆଜି ପ୍ରଥମ କରି ନିଃସଙ୍ଗ ଭାବେ ସମ୍ମୁଖୀନ ହେବାକୁ ପଡ଼ିଛି ଏଇ ପ୍ରଥମ ଶରତର । ବର୍ଷଣ କ୍ଲାନ୍ତ ଶରତର ନୀଳ ଆକାଶ ମଣିଷ ମନରେ ମନରେ ଯେଉଁ ନୂତନ ଜୀବନର ଇଙ୍ଗିତ ଦେଇଥାଏ, ସେଥିରେ କୁଢ଼ କୁଢ଼ ଟୁକୁରା ଟୁକୁରା କଳାମେଘ ଯଦି ଭରିଯାଏ, ତାହାର ଭାରା କି ସହ୍ୟ କରାଯାଏ ? ନା ପାରୁନି । ମନେହେଉଛି ଏଇ ଟୁକୁରା ଟୁକୁରା ମେଘଖଣ୍ଡ ନାଚି ନାଚି ସତେକି ମୋତେ ବିଦ୍ରୂପ କରୁଛନ୍ତି । ଆଚ୍ଛା ମେମ୍ ସାହେବ୍, ତୁମେ ବି କଣ ମନରେ ଯନ୍ତ୍ରଣା ଅନୁଭବ କରୁଛ ? ମନେହେଉଛି କି କିଏ ଯେମିତି ପ୍ରାଣ ଭିତରେ ସୁର ଧରିଛି କରୁଣ 'ଭାଟିୟାଲୀ' ସଂଗୀତର ?

ଭବାନୀ କୁମାର ଭାରତବର୍ଷର ଜଣେ ଯଶସ୍ୱୀ ଚଳଚ୍ଚିତ୍ର ଅଭିନେତା ହେଲେ ବି ମୁଁ ତାଙ୍କ ପାର୍ଟିକୁ ଯାଏନା । କିନ୍ତୁ ମନର ଅବସ୍ଥା ଭଲ ନଥିବାରୁ ସେଦିନ କିଛିସମୟ ପାଇଁ ନିଜକୁ ଭୁଲେଇଦବା ଆଶାରେ ଯାଇଥିଲି । ତା'ଛଡ଼ା ତୁମେ ଜାଣ, ଭବାନୀ କୁମାର ଆଜି ସିନା ନାମଜାଦା ଅଭିନେତା, ହେଲେ ସେ ମୋର ବହୁଦିନର ପରିଚିତ । ସଂପ୍ରତି କାଶ୍ମୀର ଏବଂ ଦିଲ୍ଲୀରେ ଆଉଟ୍‌ଡୋର ସୁଟିଂ ପାଇଁ ଭବାନୀ ପ୍ରାୟ ବମ୍ବେରୁ ଏଠିକି ଆସୁଛି । ଆଉ ଏଠିକି ଆସିଲା ମାତ୍ରେ ମୋତେ ଡାକେ ଉଭୟ ଡ୍ରିଙ୍କସ୍ ଏବଂ ଡିନର୍ ପାଇଁ । କୌଣସି ନା କୌଣସି ବାହାନା ଦେଖେଇ ତାର ଇନ୍‌ଭିଟେସନ୍‌କୁ ମୁଁ ଆକ୍‌ସେପ୍ଟ କରେନା । କିନ୍ତୁ ସେଦିନ ରାତିର ନିମନ୍ତ୍ରଣକୁ ଆଉ ଅଗ୍ରାହ୍ୟ କରିପାରିଲି ନାହିଁ ।

ଭବାନୀ କହିଥିଲା, ସଂଧ୍ୟା ପରେ ତା ହୋଟେଲକୁ ଯିବାକୁ । ଠିକ୍ ବାହାରୁଛି, ଏଇ ସମୟରେ ଜଣେ ବନ୍ଧୁ ଆସିଯିବାରୁ ମୋର ପହଞ୍ଚୁ ପହଞ୍ଚୁ ପ୍ରାୟ ସାତଟା ପନ୍ଦର ହେଇଗଲା । ରୁମ୍ ନମ୍ବର 'ଫାଇଭ୍‌ଓ୍ୱାନ୍‌ଟୁ'ର ସାମ୍‌ନାରେ ଛିଡ଼ା ହେଉ ହେଉ ଭିତରୁ ମିଠା ହସର ଲହର ଭାସି ଆସିଲା ମୋ କାନକୁ । କବାଟ ନକ୍ କରିବାକୁ ଯାଇ ହାତ

ଅଟକିଗଲା । ଷ୍ଟେପିଙ୍ଗ୍‌ର ଆୱାଜ୍ ସଙ୍ଗେ ସଙ୍ଗେ ଦ୍ୱୈତ ହସର ଅର୍କେଷ୍ଟ୍ରା ଶୁଣିବାକୁ ପାଇଲି । ବେଶ୍ ବୁଝିଲି - ଭିତରେ ଚାଲିଛି ବସନ୍ତୋତ୍ସବ । ଥରେ ଭାବିଲି, ଯାଉଛି ଫେରିଯିବି । ପୁଣି ଭାବିଲି- ନା, ଫେରିବି ନାହିଁ । ଏମିତି ପ୍ରାୟ ଦଶ ମିନିଟ୍ କଟିଗଲା । ଶେଷରେ କବାଟରେ ନକ୍ କରି, ଡାକିଲି 'ଭବାନୀ' ! ପ୍ରଥମେ କୌଣସି ଉତ୍ତର ପାଇଲି ନାହିଁ, ପୁଣି ନକ୍ କଲି ।

ଭିତରୁ ଚିତ୍କାର ଶୁଭିଲା, 'କମ୍ ଇନ୍ ବାଚ୍ଚୁ ।'

କବାଟ ଖୋଲି ଘର ଭିତରେ ଗୋଟିଏ ପାଦ ପକେଇ ଅଟକି ଗଲି । ଦେଖିଲି, ସୋଫାଗୁଡ଼ିକୁ ଗୋଟିଏ ପାଖକୁ ଆଡ଼େଇ ଦେଇ ଦୁଇଜଣ ସୁନ୍ଦରୀଙ୍କ ଦୁଇହାତ ଧରି ଭବାନୀ ପ୍ରାଣଭରା ଆନନ୍ଦରେ ନାଚିଚାଲିଛି । ମୋତେ ଇସାରାରେ ଡାକିଲେ ମଧ୍ୟ ମୁଁ ଠିଆ ହେଇ ରହିଗଲି । ପକେଟରୁ ରୁମାଲ୍‌ଟା ବାହାର କରି ମୁହଁଟାକୁ ପୋଛିଦେଲି, 'ଟାଇ'ର ନଟ୍‌ଟାକୁ ସଜାଡ଼ିଦେଲି । ଝିଅ ଦିଟା ମୋ ଆଡ଼କୁ ଅନେଇଦେଇ ପୁଣି ହା-ହଲ୍ଲା ଚିତ୍କାର କରି ଆଉ କେତେଥର ନାଚି ପକେଇଲେ ।

ନାଚ ବନ୍ଦ ହେଲା । ଭବାନୀ ଦୁଇହାତରେ ଦୁଇଜଣଯାକ ଝିଅଙ୍କୁ ନିଜ ଛାତିକୁ ଟାଣିଆଣି ଟିକିଏ ଗେଲ କରି ଛାଡ଼ିଦେଲା । ତାପରେ ଆନନ୍ଦରେ ଗଦ୍‌ଗଦ ହେଇ ମୋ ପାଖକୁ ଧାଇଁ ଆସି ମୋତେ କୁଣ୍ଢେଇ ପକାଇଲା । କହିଲା, 'ଭାଇ, ଉଇ ଆର୍ ମିଟିଂ ଆଫ୍‌ଟର୍ ଏ ଲଙ୍ଗ୍ ଟାଇମ୍, ନୁହେଁ ନା ?'

'ହଁ' ବୋଲି ଛୋଟ ଉତ୍ତରଟିଏ ଦେଲି ।

'ଗାର୍ଲସ୍ କମ୍ ଅନ୍ ।' ଭବାନୀ ଝିଅ ଦୁଇଟିଙ୍କୁ ଡାକିଲା । କହିଲା 'ମିଟ୍ ମାଇଁ ଫ୍ରେଣ୍ଡ ବାଚ୍ଚୁ, ଦି ଜର୍ଣ୍ଣାଲିଷ୍ଟ ।'

ଦୁଇଟି ସୁନ୍ଦର ନରମ ହାତ ମୋ ଆଡ଼ିକି ଆଗେଇ ଆସିଲା । ହସ ହସ ମୁହଁରେ କରମର୍ଦ୍ଦନ କଲି ଦୁହିଁଙ୍କ ସହିତ ।

'ଭବାନୀ, ଏମାନେ ତ ମୋ ପରିଚୟ ପାଇଲେ, କିନ୍ତୁ ମୁଁ ଯେ ଏମାନଙ୍କ ପରିଚୟ ଜାଣିପାରିଲି ନାହିଁ ।'

'ଆଇ ସି । ବିଖ୍ୟାତ ଆଇ.ସି.ଏସ୍. ମିଃ ଆର୍.ଏନ୍. ଫକ୍‌କଡଙ୍କ ଝିଅ ମିସ୍ ଗଙ୍ଗା ଫକ୍‌କଡ୍ ଓ ମିସ୍ ଯମୁନା ଫକ୍‌କଡ୍ ।'

ଭାରତୀୟ ରୀତିରେ ହାତ ଯୋଡ଼ି ଅଥଚ ନମସ୍କାର ନ କରି, ମୁଣ୍ଡ ତଳକୁ କରି ପରିଚୟର ପ୍ରଥମ ସ୍ୱୀକୃତି ଜଣାଇଲେ ମିସ୍ ଗଙ୍ଗା ଫକ୍‌କଡ୍ ଓ ମିସ୍ ଯମୁନା ଫକ୍‌କଡ୍ ।

ଏହାପରେ ଘରକୋଣରେ ଥିବା ଦୁଇଟି ସିଙ୍ଗଲ୍ ସୋଫାରେ ଲଗାଲଗି ଭାବେ ବସିଗଲୁଁ ଚାରିହେଁ । ମୋ ପାଖରେ ଗଙ୍ଗା ନା ଯମୁନା ବସିଥିଲା, ମୁଁ ସଠିକ୍ ଭାବେ ଜାଣିନି, ତେବେ ଦୁଇଟିଯାକ ଭଉଣୀଙ୍କ ପବିତ୍ରତା ଯେ ଏକ ଧରଣର— ତାହା ବୁଝିବା ପାଇଁ ସେଇ ରାତିରେ ବେଶୀ ସମୟ ଲାଗିଲା ନାହିଁ ।

କ୍ୟାନାଡ଼ିୟାନ୍ ହୁଇସ୍କିରେ ସୋଡ଼ା ମିଶେଇ ଚାରିଟି ଗ୍ଲାସ୍ ବନେଇଲା ଭବାନୀ । ସେହିଁ ପ୍ରଥମେ ଗ୍ଲାସ୍ ଉଠେଇ କହିଲା, 'ଚିୟର୍ସ । ଲେଟ୍ ଅଶ୍ ଡ୍ରିଙ୍କ ଦି ହେଲ୍‌ଥ ଅଫ୍ ବାଛୁ ।'

ମୁଁ ବାଧାଦେଇ କହିଲି - 'ଜଲି ଗୁଡ୍ ଗାର୍ଲସ୍ ଗଙ୍ଗା-ଯମୁନାଙ୍କ ସ୍ୱାସ୍ଥ୍ୟ ଏମିତି ଅତୁଟ ଥାଉ ।'

ଭବାନୀ ଅବିଳମ୍ବେ ପୁଣି ଗ୍ଲାସକୁ ଟେକିଧରି ଚିତ୍କାର କରି କହିଲା, 'ଚିୟର୍ସ ! ଗଙ୍ଗା-ଯମୁନା ।'

ସମସ୍ତେ ଗ୍ଲାସ୍‌ରେ ଚୁମୁକାଏ ଲେଖାଏ ଦେଇ ଥୋଇ ଦେଲୁ । ଭବାନୀ ଚିତ୍କାର କଲା, 'ଗଙ୍ଗା ! ସିଗାରେଟ୍ କାହିଁ ?'

'ଜଷ୍ଟ ଏ ମିନିଟ୍' କହି ମୋ ସୋଫାରୁ ମିସ୍ ଫକ୍‌କଡ଼ ଉଠିଯାଇ ଭବାନୀର ବେଡ୍‌ରୁମ୍‌ରୁ ସିଗାରେଟ୍ ଟିଣଟି ଓ ଲାଇଟର୍‌ଟି ଆଣିଆସିଲା । ଭବାନୀର ଓଠରେ ସିଗାରେଟ୍ ଗୁଞ୍ଜିଦେଇ ଲାଇଟର ଜଳେଇ ଧରିଲା ଗଙ୍ଗା, ଯମୁନା ନିଜେ ନିଜେ ଧରିନେଲା । ଯେତେ ଯାହାହେଲେ ବି ଆଇ.ସି.ଏସ୍.ଙ୍କ ଝିଅଟି । ଗଙ୍ଗାର ସୌଜନ୍ୟରେ ତ୍ରୁଟି ହେଲା ନାହିଁ । ମୋ ଓଠରେ ବି ସିଗାରେଟ୍ ଗୁଞ୍ଜିଦେଇ ଲାଇଟର ଜଳେଇଧରିଲା । ମୁଣ୍ଡରେ ମୋର ହଠାତ୍ ସତେକି ଦୁଷ୍ଟାମି ଜୁଟିଲା । ସିଗାରେଟ୍‌ରେ ନିଆଁ ନ ଲଗେଇ ଲାଇଟର୍‌ର ଆଲୁଅରେ ମୁଁ ଗଙ୍ଗାର ମୁହଁକୁ ଭଲ ଭାବରେ ଦେଖିଲି । କ୍ଷୁଧାର୍ତ୍ତ ଦୁଇଟି ଆଖି ଏବଂ ଅନୁଭବ କଲି ତାର ଉତ୍ତପ୍ତ ଦୀର୍ଘ ନିଃଶ୍ୱାସର ଜ୍ୱଳନ୍ତ ସ୍ପର୍ଶ । ନିଜ ଓଠଟିକୁ କାମୁଡ଼ି ମିସ୍ ଗଙ୍ଗା ଟିକିଏ ମୁରୁକି ହସିଥିଲା । ମାତ୍ର କେତୋଟି ମୁହୂର୍ତ୍ତରେ ଏସବୁ ଘଟିଗଲା । ଭବାନୀ ଆଖିରେ କାଳେ ଧରାପଡ଼ିଯିବି ସେଇ ଭୟରେ ତରବରିଆ ଭାବେ ସିଗାରେଟ୍‌ରେ ନିଆଁ ଲଗେଇ ବେଶ୍ ଦମେ ଧୂଆଁଟାଣି ଛାଡ଼ିଦେଲି । ଏହାପରେ ଟଞ୍ଚଳ ପକେଟରୁ ମୋର ଲାଇଟର ବାହାର କରି ନିଆଁ ଧରେଇ ଦେଲି ଗଙ୍ଗା ଓଠର ସିଗାରେଟ୍‌ଟିକୁ ।

ଜାଣିଚ ନା ମେମ୍ ସାହେବ୍, ଗଙ୍ଗା ମୋର ଗାଲ ଦୁଇଟିକୁ ଟିପି ଗେଲକରି କହିଲା, 'ଥ୍ୟାଙ୍କ୍ ୟୁ ।'

ଏହା ପରବର୍ତ୍ତୀ ରାଉଣ୍ଡର ଅଧା ପିଉ ନ ପିଉଣୁ ଯମୁନା କ୍ଳାନ୍ତ ହୋଇ ଭବାନୀର ଛାତିରେ ଲୋଟିପଡ଼ିଲା । ଭବାନୀ କହିଲା, 'ଏବେ ତ ମାତ୍ର ଦଶଟା ବାଜିଛି । ଏତେବେଳୁ ଟାୟାର୍ଡ଼ ?'

ଦୁଇ ହାତରେ ଭବାନୀର ଗାଲକୁ ଜାବୁଡ଼ି ଧରି ମିସ୍ ଯମୁନା ଫକ୍‌କଡ଼ କହିଲା, 'ଆଦୌ ଟାୟାର୍ଡ଼ ହେଇନି ମ - ଷ୍ଟୋରିଙ୍ଗ୍ ଏନର୍ଜି ଫର୍ ବେଟର୍ ପାର୍ଟ ଅଫ୍ ନାଇଟ୍ ।'

ଆଙ୍ଗୁଳିରେ ଗଙ୍ଗା ମୁହଁଟିକୁ ଟିକିଏ ଟାଣିଧରି କହିଲି, 'ୟୁ ଡୋଣ୍ଟ ଫିଲ୍ ନେସେସିଟି ଟୁ ଷ୍ଟୋର ଏନର୍ଜି ଫର୍ ବେଟର୍ ପାର୍ଟ ଅଫ୍ ନାଇଟ୍ ?'

'ଆପଣଙ୍କ ଅପେକ୍ଷା ବହୁତ ବେଶୀ ଏନର୍ଜି ମୋର ଅଛି ।'

ମନେ ମନେ ଭାବିଲି, ନିଶ୍ଚୟ ଅଛି ।

ରାତି ଟିକିଏ ଗଭୀର ହେବା ସଙ୍ଗେ ସଙ୍ଗେ ମିସ୍ ଗଙ୍ଗା ଫକ୍କଡ୍ ସହିତ ମୋର ହାର୍ଦ୍ଦିକତା ବେଶ୍ ଜମି ଯାଇଥିଲା । ତାକୁ ପଚାରିଲି, 'ଭବାନୀକୁ କେମିତି ଶିକାର କଲେ ?'

'ଶିକାର କହନ୍ତୁ ନାହିଁ, କହନ୍ତୁ ଡିସ୍‌କଭରୀ ।'

ତାପରେ ଶୁଣିଥିଲି ସେଇ କାହାଣୀ । ....ରାଜଧାନୀ ଦିଲ୍ଲୀର ସମାଜ ଜୀବନର ଅନ୍ୟତମ ଭି.ଆଇ.ପି. ମିଃ ଆର୍.ଏନ୍. ଫକ୍କଡ୍, ଆଇ.ସି.ଏସ୍. ଦୁଇକନ୍ୟା ଓ ପତ୍ନୀଙ୍କୁ ନେଇ କେତେ ବର୍ଷ ତଳେ ମେ'ମାସ ମଝାମଝି ଯାଇଥିଲେ ଗୁଲ୍‌ମାର୍ଗକୁ । ତିନିବର୍ଷ ପରେ କୌଣସିମତେ ସାତଦିନ ସମୟ ହାତରେ ନେଇ ବମ୍ବେର ବିଖ୍ୟାତ ଅଭିନେତା ଭବାନୀକୁମାର ମଧ ଠିକ୍ ସେହି ସମୟରେ ଗୁଲ୍‌ମାର୍ଗରେ । ହେଭୀ ସନ୍‌ଗ୍ଲାସର ଆଢୁଆଳରେ ଦୁଇଦିନ ପର୍ଯ୍ୟନ୍ତ ଭବାନୀ ନିଜକୁ ଲୁଚେଇ ରଖିଥିଲା । କିନ୍ତୁ ତିନି ଦିନ ଦିନ ଗଙ୍ଗା ନିକଟରେ ଧରାପଡ଼ିଯାଇଥିଲା । ହୋଟେଲ୍‌ର ଲାଉଞ୍ଜରେ ଗଙ୍ଗା ଖାଲି ମୁଚୁକି ହସି କଡ଼େ କଡ଼େ ଚାଲିଯାଇଥିଲା- କଥା କହିନି । ଯମୁନା, ବାପା ଓ ମା'ଙ୍କୁ ମଧ କିଛି କହିଲାନି । ସେଦିନ ରାତିରେ ଯମୁନା ଶୋଇଯିବା ପରେ ଗଙ୍ଗା ପାଦ ଚିପି ଚିପି ଘରୁ ବାହାରିଗଲା । ଭବାନୀର ଦୁଆରରେ ନକ୍ କରିବାରୁ ଭବାନୀ ଭାବିଲା ବୋଧେ ବେହେରା ଡ୍ରିଙ୍କ୍‌ସ ଆଣି ଆସିଛି । ତେଣୁ ଭିତରୁ ଥାଇ କହିଲା, 'କମ୍ ଇନ୍ ।'

ନାମ୍‌ଜାଦା ଫିଲ୍ମଷ୍ଟାର୍ ଭବାନୀ ଘାବରେଇ ଯାଇନି । ଭାରତବର୍ଷର ବହୁ ହୋଟେଲ୍‌ରେ ବହୁତ ରାତିରେ ଏମିତି ବହୁ ଅତିଥି ଆସିଛନ୍ତି ତା କୋଠରୀକୁ । ଡାକିଥିଲା, ପାଖରେ ବସେଇଥିଲା, ଆଳାପ କରିଥିଲା, ଡ୍ରିଙ୍କ୍ କରିଥିଲା ଏବଂ ତାପରେ ହୁଏତ ଆହୁରି ବହୁତ କିଛି । ଶେଷରେ ନିଶାର ଆସରରେ ଗଙ୍ଗା ଲୋଟି ପଡ଼ିଥିଲା ଭବାନୀର ବିଛଣାରେ । ଭବାନୀ ସେଇ ଅଚେତ ଗଙ୍ଗାର ଦେହଟାକୁ ବୋହିନେଇ ଯାଇଥିଲା ଗଙ୍ଗାର କୋଠରୀକୁ । ସେଇଠି ଦେଖିଥିଲା ଯମୁନାକୁ ।

ପରଦିନ ଭୋର୍ ବେଳାରେ ଭବାନୀ ହିଁ ଆସି ନକ୍ କରିଥିଲା ଗଙ୍ଗା-ଯମୁନାଙ୍କ କୋଠରୀ କବାଟରେ । ଗଙ୍ଗା ଶୋଇପଡ଼ିଥିଲା । ଯମୁନା କବାଟ ଖୋଲି ଦେଖିଥିଲା ଭାରତବର୍ଷର ଲକ୍ଷ ଲକ୍ଷ ଯୁବତୀଙ୍କ ହୃଦୟ ସମ୍ରାଟ୍ ଭବାନୀ କୁମାରଙ୍କୁ । ଏଣୁ ଯମୁନା ମୂର୍ଚ୍ଛା ପ୍ରାୟ ହେଇଗଲା । ସେ ଯାହା ହେଉ, ସେଇ ସୁଦୀର୍ଘ କାହାଣୀକୁ ପରେ ବଖାଣିବି । କେବଳ ଏତିକି ଜାଣିଥାଅ, ବାକି କେଇଟା ଦିନ ଗୁଲ୍‌ମାର୍ଗରେ ଭବାନୀ ମହା ଆନନ୍ଦରେ କଟେଇ ଦେଉଥିଲା ଗଙ୍ଗା-ଯମୁନାଙ୍କ ପୁଣ୍ୟ ସାନ୍ନିଧରେ । ଭବାନୀ କୁମାର ସହିତ ଝିଅ ଦୁଇଟାଙ୍କ ଘନିଷ୍ଠତା ଦେଖି ମୁଗ୍ଧ ହୋଇଥିଲେ ମିଃ ଫକ୍କଡ୍ ଆଉ ଆନନ୍ଦର ଆତିଶଯ୍ୟରେ ଫାଟିପଡ଼ିଥିଲେ ମିସେସ୍ ଫକ୍କଡ୍ ।

ଏହି ନାଟକର ଦ୍ୱିତୀୟ ଅଙ୍କ ଦିଲ୍ଲୀରେ ଅଭିନୀତ ହୋଇଆସିଛି କେଣ୍ କିଛିଦିନ ତା'ପରେ ପରେ । ଭବାନୀ ଯେତେବେଳେ ଦିଲ୍ଲୀକୁ ଆସେ, ଆଉ କୌଣସି ମହୁମାଛି ତା ପାଖକୁ ଆସିବାକୁ ଚାହାନ୍ତି ନାହିଁ । ଗଙ୍ଗା ଯମୁନାଙ୍କ ବାହୁ ବନ୍ଧନରେ ଭବାନୀ ମହାଆନନ୍ଦରେ ବନ୍ଦୀ ଜୀବନଯାପନ କରେ ଦିଲ୍ଲୀ ରହଣିର ଦିନଗୁଡ଼ିକ ।

ସେଇ ରାତିରେ ସେମାନଙ୍କର ଘନିଷ୍ଠତାର ବହୁ ପ୍ରମାଣ ମୁଁ ପାଇଥିଲି । ସେଇ କାହାଣୀର ବିବରଣୀ କେବଳ ତୁମରି କାନେ କାନେ କହିଲେ ଚଳିବ । ତେଣୁ ଫେରିଆସିଲେ ତୁମକୁ କହିବି । ଜାଣିଚ ମେମ୍ ସାହେବ ! ଭବାନୀ କୁମାର ସହିତ ଗଙ୍ଗା ଯମୁନାଙ୍କ ଘନିଷ୍ଠତା ହେବା ପରେ ଦିଲ୍ଲୀର ସମାଜ ଜୀବନରେ ମିସେସ୍ ଫକ୍‌କଡ଼ଙ୍କ ପ୍ରତିପତ୍ତି ଥ୍ରିଷ୍ଟେଜ୍ ରକେଟ୍ ପରିକା ପ୍ରତି ମୁହୂର୍ତ୍ତରେ ଶତ ଶତ ଯୋଜନ ଉପରେ ଉଡ଼ିବାକୁ ଲାଗିଲା । ଆଉ ମିଃ ଫକ୍‌କଡ଼ ? ଅନେକ ବ୍ୟାଚେଲର୍ ଆଇ.ଏ.ଏସ୍. ତାଙ୍କର ଚରଣାମୃତ ସେବନ କରିବା ଆରମ୍ଭ କରିଦେଲେ । ଭବାନୀର ବନ୍ଧୁ ଭାବରେ ଫକ୍‌କଡ଼ଙ୍କ ଗୃହରେ ଆଜିକାଲି ମୋର ବି ପ୍ରତିପତ୍ତି ବେଶ୍ ଜୋର୍‌ଦାର୍ ।

ସ୍ନେହ ନିଅ ।

— ତୁମରି ବାଛୁ ।

ମେମ୍ ସାହେବ,

ଯେତେବେଳେ ବି ତୁମକୁ ପାଖରେ ପାଇଛି, ପାଖରୁ ଦେଖିଛି, ସେତେବେଳେ ମନେହୁଏ— ଆମ ନିଜର କଥାଟା ଅକୁହା ରହିଯାଏ ! ଦିନ ପରେ ଦିନ ତୁମେ ଓ ମୁଁ ସାରା ଦିନ ସାରା ରାତି ଏକ ସଙ୍ଗେ କଟେଇଛେ । କଥା ହଉ ହଉ ମିନିଟିକ ପାଇଁ ବି ଆଖିପତା ପଡ଼େନା; ଅଥଚ ସେଇସବୁ ଅତ୍ୟନ୍ତ ମଧୁର ଦିନଗୁଡ଼ିକର ଶେଷରେ ବି ଯେମିତି ମନେହୁଏ - ସତେ କି କିଛି ହେଲେ କୁହା ହେଲାନି । ଦୁହିଁଙ୍କର ହସ-କାନ୍ଦ, ସୁଖ ଦୁଃଖ, ଆଶା-ନିରାଶା ଓ ଭବିଷ୍ୟତର କଥା ସତେ କି ଆଜି ପର୍ଯ୍ୟନ୍ତ ବି କୁହା ଶେଷ ହେଇନି ! ମଝିରେ ମଝିରେ ମନେ ହେଇଛି, ଯୁଗ ଯୁଗ ଧରି ଆମର କଥା ଜମା ହେଇଛି— କିନ୍ତୁ ସବୁକିଛି କହିବାର ସଂପୂର୍ଣ୍ଣ ସୁଯୋଗ ପାଇନେ ଜନ୍ମ-ଜନ୍ମାନ୍ତର ଧରି । ସେଇଥିପାଇଁ ତ ବାହାର ଦୁନିଆର ଯେଉଁ ଅସୁମାରି ମଣିଷଙ୍କ ସଂସ୍ପର୍ଶରେ ମୁଁ ଆସେ, ସେମାନଙ୍କ ମଧ୍ୟରୁ ଅନେକଙ୍କର କଥା ତୁମକୁ କହିପାରିନି, ଜଣେଇ ପାରିନି ସେମାନଙ୍କର ବୈଚିତ୍ର୍ୟମୟ ଜୀବନ ନାଟକର କାହାଣୀ । ତୁମର ବିଦେଶବାସ ମୋତେ ବହୁତ କିଛିରୁ ବଞ୍ଚିତ କରିଥିଲେ ବି ଅନ୍ତତଃ ଅନ୍ୟର କଥା କହିବାର ସୁଯୋଗ ଦେଉଛି । ମୋର କର୍ମ ଜୀବନ ସହିତ ଯେଉଁମାନେ ଜଡ଼ିତ, ସେମାନଙ୍କ ମଧ୍ୟରୁ ଜଣେ ହେଉଛନ୍ତି ମିଃ ଲୁଟ୍‌ପାଟୀୟା । ଆଜି ତାଙ୍କରି କଥା ହିଁ ତୁମକୁ ଜଣଉଛି ।

ସ୍ୱାଧୀନ ଭାରତବର୍ଷରେ ଦୁରନ୍ତ ଦାମୋଦର ଉପତ୍ୟକାକୁ ଶିକୁଳିରେ ବାନ୍ଧି ଗଢ଼ା ହେଇଛି ଡି.ଭି.ସି. (ଦାମୋଦର ଭେଲି କର୍ପୋରେସନ୍), ଭାକ୍ରା-ନାଙ୍ଗଲ୍ ହେଇଛି, ବଙ୍ଗ-ବିହାରର ରୁକ୍ଷ ପ୍ରାନ୍ତରରେ ମୁଣ୍ଡ ଟେକିଛି ଚିତ୍ତରଞ୍ଜନ ସିନ୍ଦ୍ରୀ, ଜଙ୍ଗଲ କଟା ହେଇ ଗଢ଼ା ହେଇଛି ଦୁର୍ଗାପୁର, ରାଉରକେଲା, ଭିଲାଇରେ ଆକାଶଛୁଆଁ ଚିମ୍‌ନୀମାନ ଠିଆ ହେଇଛି, ବାଙ୍ଗାଲୋର୍‌ର ଫୁଲବଗିଚାକୁ ଲୁଚେଇଦେଇ ଲଢୁଆ ବିମାନ ତିଆରି କାରଖାନାର କାହାଣୀ ପ୍ରଚାରିତ ହେଇଛି ।

ଦେଶ ସ୍ୱାଧୀନ ହେବା ପରେ ଆହୁରି ବି ଅନେକ କିଛି ହେଇଛି, ଏମ୍.ଏଲ୍.ଏ., ଏମ୍.ପି. ଦଳ ଏବେ ଯେମିତି କଥାରେ କଥାରେ ମନ୍ତ୍ରୀମାନଙ୍କ ଉପରେ ଟୀକ୍‌କା ଟିପ୍‌ପଣୀ କରନ୍ତି, ସରକାରୀ ଆଇନକାନୁନ୍ ପ୍ରତି ଅସମ୍ମାନ ଦେଖାନ୍ତି, ହରିଲୁଟ୍‌ର ହାଓ୍ୱାରେ କ୍ୟାରେକ୍ଟର ସାର୍ଟିଫିକେଟ୍ ଉଡ଼ାନ୍ତି, ଆଗେ ସେପରି ନଥିଲା । ଆଗେ ମନ୍ତ୍ରୀମାନଙ୍କର ରୂପ ମଧ୍ୟ ଅଲଗା ଥିଲା । ଏବ ପରିକା ଅତୀତରେ ସେମାନେ ସବିନୟ ନିବେଦନମିଦଂ କରି ଦେଶ ସେବକର ତିଳକ ପିନ୍ଧି କ୍ଷମତା ଉପଭୋଗ କରୁ ନଥିଲେ । ସର୍ବତ୍ୟାଗୀ ଦେଶସେବକ ହୋଇ ବି ସରକାରୀ ତହବିଲରୁ ଅଶୀ ନବେ ହଜାର ଟଙ୍କା ଖର୍ଚ୍ଚ କରି ଘରଗୁଡ଼ିକୁ ଫର୍ଣ୍ଣିସ୍‌ଡ଼ କରିବାର ସୁଯୋଗ ନଥିଲା ସେତେବେଳେ । ଆହୁରି ମଧ୍ୟ ବହୁତ କିଛି ନଥିଲା । ନଥିଲା ସାନ୍‌ଫ୍ରାନ୍‌ସିସ୍‌କୋରୁ ଟୋକିଓ ଘୁରିବୁଲିବାର ସୁଯୋଗ । ନଥିଲା ବି ଚାଟାର୍ଡ଼ ପ୍ଲେନ୍‌ରେ ଚଢ଼ି ଶହ ଶହ ମାଇଲ୍ ଉଡ଼ିଯାଇ ଦାତବ୍ୟ ହୋମିଓ-କ୍ଲିନିକ୍‌ର ଉଦ୍‌ଘାଟନ କରିବାର ରୀତି । ଲକ୍ଷେ ଟଙ୍କାର ଇମ୍ପାଲା ଗାଡ଼ି ଚଢ଼ି ସୋସ୍ୟାଲିଜିମ୍‌ର ସ୍ଲୋଗାନ୍ ଗାଇ ବୁଲିବାର ସଉକ ବି ନଥିଲା ଅତୀତରେ । ଆଜି ତ ଏଇସବୁ 'ଚେନାଚୁର୍' ଭଳି ଖୁବ୍ ଶସ୍ତା ହେଇଯାଇଛି ! ଖାଲି କ'ଣ ସେତିକି ? ଆଗକାର ଦିନରେ ଗାନ୍ଧିଜୀ ପ୍ରତିଦିନ ସଂଧ୍ୟାର ପ୍ରାର୍ଥନା ସଭାରେ ପାଞ୍ଚଦଶ ମିନିଟ୍‌ର ବକ୍ତୃତା ଦେଉଥିଲେ । ଜବାହାରଲାଲ୍ - ସୁଭାଷ ଚନ୍ଦ୍ର- ସର୍ଦ୍ଦାର ପଟେଲ୍ ଅଥବା ଆଉ ଦୁଇଚାରିଜଣ ନେତାଙ୍କ ଛଡ଼ା ଆଉ କୌଣସି ନେତାଙ୍କ ବିବୃତି ବା ବକ୍ତୃତା ଖବରକାଗଜରେ ଛପା ହେଉନଥିଲା । କିନ୍ତୁ ଆଜି ? ଆଜିକାଲି ତ ଖବରକାଗଜମାନଙ୍କରେ ମନ୍ତ୍ରୀମାନଙ୍କର ବକ୍ତୃତା ଓ ହିତୋପଦେଶ ଛଡ଼ା ଆଉ କିଛି ନଥାଏ କହିଲେ ଚଳେ । ବକ୍ତୃତା ଦେଖିବା ମାତ୍ରେ ପାଠକ ପାଠିକାମାନଙ୍କର ଆଲର୍ଜି ହୁଏ, ଅଥଚ ଏଇ ମନ୍ତ୍ରୀ ଦଳ ନଛୋଡ଼ବନ୍ଧା ।

କଣ୍ଟ୍ରାକ୍ଟର, ପର୍‌ମିଟ୍ ହୋଲ୍ଡର, ଶିଳ୍ପପତି ବା ବଡ଼ ବଡ଼ ବ୍ୟବସାୟୀ ସେତେବେଳେ ବି ଥିଲେ, ଏବେ ବି ଅଛନ୍ତି । ଦେଶ ପାଦେ ପାଦେ ଚାଲି ଆଗଉଥିଲା ବେଳେ ଏମାନେ ଦୌଡୁଛନ୍ତି । ଆଗେ ଟ୍ୟାକ୍ସ କମ୍ ଥିଲା, ଗାଡ଼ି, ଘରବାଡ଼ି ମଧ୍ୟ କମ୍ ଥିଲା । ଆଜିକାଲି ଟ୍ୟାକ୍ସ୍ ବଢୁଛି, ଗାଡ଼ି, ଘରବାଡ଼ି ସଂଖ୍ୟା ବି ବଢୁଛି - ବଢୁଛି ବି ପ୍ରତିପତ୍ତି । ସ୍ୱାଧୀନ ଭାରତରେ, ଗ୍ରାଜୁଏଟ୍ କଣ୍ଡକର୍ ହେଇଛି, ଏମ୍.ଏ. ପାସ୍ କରି ଲୋଅର ଡିଭିଜନ୍ କ୍ଲର୍କ ହେଉଛନ୍ତି, ଭଦ୍ରଘର ଝିଏ ଫିଲ୍ମଷ୍ଟାର ହଉଛନ୍ତି, ନର୍ତ୍ତକୀମାନେ ବି

ଆଇ.ସି.ଏସ୍.ମାନଙ୍କୁ ପ୍ରଭାବିତ କରୁଛନ୍ତି । ଆହୁରି କେତେ କଣ ହଉଛନ୍ତି - ହଉଛନ୍ତି ଇନ୍‌ଫରମେସନ୍ ଅଫିସର୍, ପବ୍‌ଲିସିଟି ଅଫିସର୍ ଦଳ । କିନ୍ତୁ ସମସ୍ତଙ୍କ ଉପରେ ହଉଛନ୍ତି ପ୍ରାଇଭେଟ୍ ସେକ୍ରେଟାରୀ ଓ ପର୍ଶନାଲ୍ ଆସିଷ୍ଟାଣ୍ଟ ଦଳ ।

ବାହାର ଦୁନିଆରେ ଥିବା ଲୋକଙ୍କର ଠିକ୍ ଆଇଡିଆ ନାହିଁ । ପି.ଏସ୍. ଓ ପି.ଏ. ଦଳ ପ୍ରକୃତରେ କଣ । ମୋତେ ଅନେକ ପଚାରନ୍ତି । ମୋ ହାତରେ ସମୟ ଥିଲେ ଲମ୍ବା-ଚଉଡ଼ା ବକ୍ତୃତାଦେଇ ଏମାନଙ୍କର କାହାଣୀ ଶୁଣାଏ, କିନ୍ତୁ ଯଦି ନଥାଏ ତେବେ ପଦେ କଥାରେ କହିଦିଏଁ, ମଧ୍ୟସତ୍ତ୍ୱଭୋଗୀ ଇଣ୍ଟରମିଡ଼ିଆରୀ ।

ସତ କହୁଛି, ମା-ରାଣ ପକଉଛି, ଦିଲ୍ଲୀର ପ୍ରଭୁମାନଙ୍କର ପ୍ରାଇଭେଟ୍ ସେକ୍ରେଟାରୀଙ୍କ ଦଳ ଏକ ଅଜବ୍ ପଦାର୍ଥ । ଏମାନେ ନା ମିନିଷ୍ଟର ନା ଅଫିସର୍ । କିନ୍ତୁ ଦୁଇଟାଯାକର ଅଂଶବିଶେଷ । ଅବସ୍ଥାର ପରିପ୍ରେକ୍ଷୀରେ ଏମାନେ ମନ୍ତ୍ରୀମାନଙ୍କୁ ତୋଷାମଦ କରିଥାନ୍ତି ଏବଂ ଅଫିସର୍‌ମାନଙ୍କୁ ଦବେଇ ରଖିଥାନ୍ତି ଏବଂ ସମୟ ବିଶେଷରେ ଅଫିସର୍‌ମାନଙ୍କୁ ତୈଳମର୍ଦ୍ଦନ କରି ମନ୍ତ୍ରୀମାନଙ୍କୁ ଭୟଭୀତ କରିଥାନ୍ତି ।

ବିଖ୍ୟାତ ମନ୍ତ୍ରୀ ମିଃ ହାଲୁୟାଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ହେଉଛନ୍ତି ମିଃ ଲୁଟ୍‌ପାଟିୟା । ୟାଙ୍କ ପରି ଇଣ୍ଟରେଷ୍ଟିଙ୍ଗ୍ ବ୍ୟକ୍ତି ଦିଲ୍ଲୀରେ କାହିଁକି, ଲଣ୍ଡନ, ୱାଶିଂଟନ୍, ପ୍ୟାରିସ୍, ମସ୍କୋରେ ବି ଅଛନ୍ତି କି ନାହିଁ ସନ୍ଦେହ । ଯଦି କେବେ ଭଗବାନ ସମୟ ସୁଯୋଗ ତଥା ସର୍ବୋପରି ଶକ୍ତି ଦିଅନ୍ତି ତେବେ ନିଶ୍ଚୟ ୟାଙ୍କର ଜୀବନୀ ଲେଖିବି । ମୁଁ ଡେଫିନାଇଟ୍‌ଲି ଜାଣେ ରାଜ କପୁର, ସତ୍ୟଜିତ ରାୟଙ୍କଠାରୁ ଆରମ୍ଭ କରି ମେଟ୍ରୋଗୋଲ୍‌ଡେନ୍ ମେୟର, ଟ୍ୱେଣ୍ଟିଏଥ୍ ସେନ୍‌ଚୁରୀ ଫକ୍ସ ପ୍ରଭୃତି ସମସ୍ତେ ଏହି ବହିଟିର ଫିଲ୍ମ କରିବାକୁ ଅନୁମତି ପାଇଁ ଦୌଡ଼ିବେ ! ଖାଲି ସେତିକି ନୁହେଁ । ଲଣ୍ଡନ ଟାଇମ୍‌ସ୍‌ରେ ଲିଟରାରୀ ସପ୍ଲିମେଣ୍ଟର ସ୍ପେଶାଲ୍ ଇସ୍ୟୁରେ ଏହାର ରିଭ୍ୟୁ କରିବେ ଏବଂ ଏହି ଲେଖାର କାହାଣୀ ଜାଣିବା ଓ ଶୁଣିବା ପାଇଁ ବି.ବି.ସି., କଲମ୍ବିଆ ବ୍ରଡ୍‌କାଷ୍ଟିଙ୍ଗ୍ କର୍ପୋରେସନ୍, ଆମେରିକାନ୍ ବ୍ରଡ଼କାଷ୍ଟିଂ କର୍ପୋରେସନ୍, ମସ୍କୋ ଟେଲିଭିଜନ୍ ପ୍ରଭୃତିର ସବୁ ଟେଲିଭିଜନ୍ କମ୍ପାନୀଗୁଡ଼ିକର କରସ୍‌ପଣ୍ଡେଣ୍ଟ ଓ କ୍ୟାମେରାମ୍ୟାନ୍‌ମାନେ ମୋର ଡ୍ରଇଂ ରୁମ୍‌ରେ ଭିଡ଼ ଜମେଇ ଠିଆ ହୋଇରହିବେ ।

ଏପରି ଏକ ସେନ୍‌ସେସ୍‌ନାଲ୍ ବହି ଲେଖି ମୁଁ ଝମେଲା ଭିତରେ ଘଷିବାକୁ ଚାହୁଁ ନାହିଁ ବୋଲି ଏ ଦିଗରେ ଆଗଉନାହିଁ । ତାଛଡ଼ା ଏହି ବହିଟିରୁ ଯେଉଁ କେତେକୋଟି ଟଙ୍କା ଆୟ ହେବ, ସେଥିରେ ମୋର ମସ୍ତିଷ୍କ ବିକୃତି ଘଟିବାର ଆଶଙ୍କା ରହିଛି । ସୁତରାଂ ଏଭଳି ରିସ୍କ ନେବି କାହିଁକି ?

ଦିଲ୍ଲୀକୁ ଆସିବାର କିଛିଦିନ ଭିତରେ ମିଃ ଲୁଟ୍‌ପାଟିୟାଙ୍କ କଥା ଶୁଣିବାକୁ ପାଇଲି ଜଣେ ବିଖ୍ୟାତ ଏମ୍.ପି.ଙ୍କ ଆଡ୍‌ଡାଖାନାରେ । ନାମ୍‌ଜାଦା ଏମ୍.ପି. ହୋଇଥିବାରୁ ବହୁତ ଲୋକ ବହୁତ କିଛି ଆଶା କରନ୍ତି ୟାଙ୍କଠୁ । ଇଣ୍ଡିଆନ୍ ଡାବ୍ସ ଏକ୍ସପୋର୍ଟ ଆସୋସିଏସନ୍ ମଧ୍ୟ କିଛି ଆଶା କରିଥିଲେ । ମିସ୍ ସାନ୍ୟାଲ୍ ଏବଂ ମିସ୍ ପ୍ରଧାନ ଏମ୍.ପି. ଜଣଙ୍କୁ

ଏପରି ଭାବେ ଧରିଥିଲେ ଯେ ସେ ନାହିଁ କରିପାରିଲେ ନାହିଁ। ମିନିଷ୍ଟର୍‌ଙ୍କୁ କହି ପାଞ୍ଚଲକ୍ଷ ଟଙ୍କାର ପ୍ରତିଶ୍ରୁତି ଦିଆ କରେଇଥିଲେ। କିନ୍ତୁ ମାସ ପରେ ମାସ, ବର୍ଷ ପରେ ବର୍ଷ ବିତିଗଲା ପଛେ ଟଙ୍କାର ଦେଖା ମିଳିଲା ନାହିଁ। ମିସେସ୍ ପ୍ରଧାନଙ୍କ ଭଳି ଜଣେ ବିଶିଷ୍ଟ ବାନ୍ଧବୀଙ୍କ ନିକଟରେ ଏମ୍.ପି.ଙ୍କର ସମ୍ମାନ ଆଉ ରହିଲା ନାହିଁ କହିଲେ ଚଳେ। ଠିକ ଏପରି ସମୟରେ ଯିଏ ଏଇ ସମସ୍ୟାର ସମାଧାନ କରିଦେଲେ, ସେ ହେଉଛନ୍ତି ସ୍ୱୟଂ ମିଃ ଲୁଟ୍‌ପାଟିୟା, ପ୍ରାଇଭେଟ୍ ସେକ୍ରେଟାରୀ ଟୁ ମିନିଷ୍ଟର୍ ମିଃ ଆର୍.ଭି. ହାଲୁୟା।

ରିଜର୍ଭ ବ୍ୟାଙ୍କର 'ଚେକ୍'ଟା ଇଣ୍ଡିଆନ୍ ଡାନ୍ସ ଏକ୍ସପୋର୍ଟ ଆସୋସିଏସନ୍‌ର ଦପ୍ତରରେ ପହଞ୍ଚିଗଲା ମାତ୍ର ପାଞ୍ଚ ସାତଦିନ ଭିତରେ। ତା ପୂର୍ବରୁ ମିଃ ଲୁଟ୍‌ପାଟିୟା ଆସୋସିଏସନ୍‌ର କାର୍ଯ୍ୟକ୍ରମ ଏବଂ ଡ୍ୟାନ୍ସରମାନଙ୍କର ବିଷୟରେ ସବୁକିଛି ଠିକ୍ ଠିକ୍ ଭାବରେ ଜାଣିବା ସକାଶେ ଚାହିଁଥିଲେ। ଦିଲ୍ଲୀରେ ଥିବା ସମୟରେ ଲୋକେ ମୁହୂର୍ତ୍ତକ ପାଇଁ ତାଙ୍କୁ ନିଃଶ୍ୱାସ ନେବାକୁ ଦିଅନ୍ତି ନାହିଁ। ଏଣୁ ଅନ୍ୟଗତି ନଦେଖି ମିସେସ୍ ପ୍ରଧାନଙ୍କୁ ନେଇ ମିଃ ଲୁଟ୍‌ପାଟିୟା ଦୁଇଦିନ ପାଇଁ ମଶୋରୀରେ ରହିଥିଲେ ଏବଂ ସବୁକିଛି ଜାଣିଗଲେ। ମିନିଷ୍ଟର୍ ଏମ୍.ପି.ଙ୍କୁ ପ୍ରମିସ୍ କରି ମଧ ଏଇ ଆସୋସିଏସନ୍‌କୁ ପାଞ୍ଚଲକ୍ଷ ଟଙ୍କା ଦେଇପାରିନଥିଲେ ଅଥଚ ପ୍ରମିସ୍ ନକରି ମିଃ ଲୁଟ୍‌ପାଟିୟା ଦେଇପାରିଥିଲେ ସାଢ଼େ ସାତଲକ୍ଷ ଟଙ୍କା। ଯା ପରେ ମିସେସ୍ ପ୍ରଧାନ ଆଉ କେବେ ବି ଏମ୍.ପି.ଙ୍କ ଦରବାରରେ ହାଜର ହୋଇଥିବାର ଶୁଣିନି।

ମୋ ସହିତ ମିଃ ଲୁଟ୍‌ପାଟିୟାଙ୍କ ଆଳାପ, ପରିଚୟ ତଥା ଘନିଷ୍ଠତା ଅଦ୍ଭୁତ ପ୍ରକାରେ ହୋଇଥିଲା। ରାୟପୁର କଂଗ୍ରେସ୍ ସେସନ୍ କଭର୍ କରି ଦିଲ୍ଲୀକୁ ଫେରିବି ବୋଲି ନାଗପୁର ସ୍ପେଶାଲ୍‌ରେ ଏକ ଲୋଅର୍ ବର୍ଥ ରିଜର୍ଭ କରିଥିଲି। ଟ୍ରେନ୍‌ଟି ଛାଡ଼ିବାର ଘଣ୍ଟାଏ ପୂର୍ବରୁ ଆସି ହାତଗୋଡ଼ ଲମ୍ବେଇ ଶୋଇଯାଇଥିଲି ନିଜ ବର୍ଥରେ। କେତେଦିନର ପରିଶ୍ରମର କ୍ଲାନ୍ତି ଯୋଗୁଁ ଶୋଉ ନ ଶୋଉଣୁ ବେଶ୍ ନିଦ ଲାଗିଗଲା। ହଠାତ୍ ଜଣେ ଭଦ୍ରବ୍ୟକ୍ତିଙ୍କ କର୍କଶ କଣ୍ଠସ୍ୱରରେ ନିଦଟା ଭାଙ୍ଗିଗଲା। ମୁହଁ ଝିଙ୍ଗାସି ମୋତେ ପଚାରିଲେ, 'ଆପଣ ଏଇ କମ୍ପାର୍ଟମେଣ୍ଟକୁ ଆସିଲେ କିପରି ?'

'ତା ମାନେ ?'

'ତା ମାନେ, ଏଇ କମ୍ପାର୍ଟମେଣ୍ଟଟି ସେଣ୍ଟ୍ରାଲ୍ ମିନିଷ୍ଟର୍ ମିଃ ହାଲୁୟାଙ୍କ ନାଁରେ ରିଜର୍ଭଡ୍।'

ମୁଁ ଟିକିଏ ଘାବରେଇଗଲି। କିଛି ଉତ୍ତର ନ ଦେଇ ଖୁବ୍‌ଶୀଘ୍ର ଟିକେଟ୍ ଏବଂ ରିଜର୍ଭେସନ୍ ସ୍ଲିପ୍‌ଟିର ନମ୍ବର ସହିତ ଗାଡ଼ିର ନମ୍ବର ମିଳେଇଦେଲି। ଦେଖିଲି, ଠିକ୍ ଅଛି। ନିଜ ବର୍ଥକୁ ଫେରିଆସି ଭଲଭାବେ ଜମେଇ ବସି କଣ୍ଠସ୍ୱରକୁ ଟିକିଏ ଝଙ୍କୃତ କରି କହିଲି,

'ଆଇ ଆମ୍ ସରି, ଏଇଟା ମୋରି ବର୍ଥ।'

ଭଦ୍ରବ୍ୟକ୍ତି ସତେକି ତାତିଲା ତେଲ କଡ଼େଇରେ ବାଇଗଣ ପଡ଼ିଲା ପରି ଜଳି ଉଠିଲେ, 'କଣ ପାଗଳ ଭଳି ପ୍ରଳାପ କରୁଛନ୍ତି, ଏଇଟା ଅନରେବଲ୍ ମିନିଷ୍ଟରଙ୍କ ପାଇଁ ରିଜର୍ଭଡ଼ ।'

ବେଶ୍ ସହଜ ଏବଂ ସରଳ ଭାବରେ ମୁଁ କହିଦେଲି— 'ହୁଏତ ହେଇପାରେ, ତେବେ ମୋର ଏଇ ବର୍ଥଟିକୁ ଛାଡ଼ି ହେଇଥିବ ।'

'ଡୋଣ୍ଟ ଟକ୍ ନନ୍‌ସେନ୍ସ ।'

ବୁଝିଗଲି, ଭଦ୍ରବ୍ୟକ୍ତି ମିନିଷ୍ଟର୍‌ଙ୍କ କେହି ଷ୍ଟାଫ୍ ହେଇପାରନ୍ତି, କିନ୍ତୁ ଜାଣିନଥିଲି ଯେ ସେ ହିଁ ମିଃ ଲୁଟ୍‌ପାଟିୟା ! ଜାଣିଥିଲେ ହୁଏତ ତାଙ୍କ ପାଦ ତଳେ ଲୋଟିଯାଇ କହିଥାନ୍ତି, ଜାହାଁପନା, ବନ୍ଦାର ଅପରାଧ କ୍ଷମା କରନ୍ତୁ । ମୋର ଅଦୃଷ୍ଟ, ମୋର ଅଜ୍ଞାନତା ଯୋଗୁ ସେଇ ଗୌରବର ଅଧିକାରୀ ମୁଁ ହେଇପାରିଲିନି । ପ୍ଲାଟ୍‌ଫର୍ମରେ ଦଳେ ଟିକେଟ୍ ଚେକ୍‌ର- କଲେକ୍ଟର୍ ଠିଆ ହେଇଥିଲେ । ସେମାନଙ୍କୁ ଡାକ ଛାଡ଼ିଲି । ଟିକେଟ୍ ଏବଂ ରିଜର୍ଭେସନ୍ ସିଟ୍ ପରୀକ୍ଷା କରି କହିଲେ, 'ଠିକ୍ ଅଛି, ତେବେ—'

'ତେବେ ପୁଣି କ'ଣ ?'

'ଅନ୍ୟ କୌଣସି ଫୋର୍ ବର୍ଥ କମ୍ପାର୍ଟମେଣ୍ଟ ଖାଲି ନଥିବାରୁ ଏଇଟିକୁ ଅନରେବଲ୍ ମିନିଷ୍ଟର୍‌ଙ୍କୁ ଆଲର୍ଟ କରାଯାଉଛି । ଟିକିଏ ଏପାଖ ସେପାଖ ଚାହିଁ କହିଲେ, 'ଯଦି କାଇଣ୍ଡଲି ଅନ୍ୟ ଏକ କମ୍ପାର୍ଟମେଣ୍ଟକୁ ଯାଆନ୍ତେ ତେବେ ଖୁବ୍ ଉପକାର କରନ୍ତେ ।'

'କି, ମନ୍ତ୍ରୀ ମହୋଦୟ ରାଗିଗଲେ କି ! ତିନି ତିନିଟା ବର୍ଥ ପଡ଼ିଛି ସେଥିରେ ଜଣେ ମନ୍ତ୍ରୀ ଯାଇପାରିବେ ନାହିଁ ?'

ରେଳ କର୍ମଚାରୀମାନେ ହସି ପକେଇଲେ । କିନ୍ତୁ ମନ୍ତ୍ରୀଙ୍କର ଅଭିଭାବକ ଜଣକ ରାଗ ଓ ଅପମାନରେ ଜଳି ଉଠିଲେ ।

– 'ଭଲରେ ଭଲରେ ଓହ୍ଲେଇ ଯାଅ, ନାହିଁ ତ—'

– 'ନାହିଁ ତ, କଣ ?'

କଥାଟା କଣ କି ମନ୍ତ୍ରୀମାନେ ବିନା ଭଡ଼ାରେ 'ଫୋର୍-ବର୍ଥ୍' କମ୍ପାଣ୍ଟମେଣ୍ଟରେ ଚଢ଼ି ଘୂରିବୁଲିବା ପାଇଁ ଅଧିକାରୀ । ଏଇ ନାଗପୁର ସ୍ପେଶାଲ୍‌ର ଆମର ବଗିଟା ଗ୍ରାଣ୍ଡ ଟ୍ରଙ୍କ ଏକ୍ସପ୍ରେସ୍‌ରେ ଯୋଡ଼ା ହେଇଯାଏ ବୋଲି ମୋର ବର୍ଥକୁ ଛାଡ଼ି ବାକିସବୁ ଗୁଡ଼ିକ ମନ୍ତ୍ରୀମାନେ ଦଖଲ କରି ପକେଇଥିଲେ । ମିଃ ହାଲୁୟା ଏକବାରେ ଇଲେଭେନ୍‌ଥ ଆୱାରରେ ଏଇ ଟ୍ରେନ୍‌ରେ ଯିବାର ସିଦ୍ଧାନ୍ତ କରିବାରୁ ରିଜର୍ଭେସନ୍ ଅଫିସର ଅନ୍ୟଗତି ନ ଦେଖି ମୋର କମ୍ପାର୍ଟମେଣ୍ଟରେ ତାଙ୍କୁ ଆଲଟ୍ କରିଥିଲେ । ଭାବିଥିଲେ ମୋତେ ଅନ୍ୟ ବର୍ଥକୁ ଚାଲାନ୍ କରିଦେବେ । କିନ୍ତୁ ଏହାଫଳରେ ମୁଁ ଶୀଘ୍ର ଦିଲ୍ଲୀକୁ ଫେରିପାରନ୍ତି ନାହିଁ । ତେଣୁ ରେଳ କର୍ମଚାରୀମାନଙ୍କର ଅନୁରୋଧ ଅଥବା ମନ୍ତ୍ରୀ–କର୍ମଚାରୀଙ୍କର ନାଲି ଆଖିରେ ମୋର ମତ ପରିବର୍ତ୍ତନ କରିବା ସମ୍ଭବ ନଥିଲା ।

ଏପାଖରେ ଆମମାନଙ୍କର ଭିତରେ । ତର୍କ ବିତର୍କ ଚାଲୁଥିବା ବେଳେ ପ୍ଲାଟ୍‌ଫର୍ମରେ ଆସି ହାଜର ହେଲେ ମିନିଷ୍ଟର୍ ମିଃ ହାଲୁୟା । ମୋ ସହିତ ବିଶେଷ

ପରିଚୟ ନଥିଲେ ମଧ୍ୟ ପାର୍ଲାମେଣ୍ଟର ସେଣ୍ଟ୍ରାଲ୍ ହଲ୍‌ରେ ଏକ ସଙ୍ଗେ ଆଡ୍‌ଡା ଦିଆହୁଏ । ତେଣୁ ନିର୍ବିବାଦରେ ମୁଁ କହିଦେଲି - 'ଦାଦାଜୀ, ଦେଖନ୍ତୁ ତ କି କଦର୍ଯ୍ୟ କଥା ! ଏମାନେ କହୁଛନ୍ତି ମୁଁ ଏବଂ ଆପଣ ଗୋଟିଏ କମ୍ପାର୍ଟମେଣ୍ଟରେ ଯାଇପାରିବା ନାହିଁ । ଆଶ୍ଚର୍ଯ୍ୟ କଥା ନୁହେଁ ?'

ହାଲୁୟା ନାମଜାଦା କଂଗ୍ରେସୀ-ସୋସ୍ୟାଲିଷ୍ଟ । ଇଚ୍ଛା ଥିଲେ ବି ଖୋଲି କହିପାରିଲେ ନାହିଁ ଯେ ମୋ ସହିତ ଯାଇପାରିବେ ନାହିଁ । ଯାହା ବି ହଉ, ମନ୍ତ୍ରୀଙ୍କୁ ଗୋଟିଏ 'କୁପେ' ଦିଆଗଲା ଏବଂ ତାଙ୍କ ଦୁଇଜଣ ବ୍ୟକ୍ତିଗତ କର୍ମଚାରୀ ମୋ କମ୍ପାର୍ଟମେଣ୍ଟକୁ ଆସିଲେ ।

ଘଣ୍ଟେ କି ଦେଢ଼ଘଣ୍ଟା ଲେଟ୍‌ରେ ଟ୍ରେନ୍ ଛାଡ଼ିଲା ରାତି ପ୍ରାୟ ଆଠ କି ନଅଟା ସମୟରେ । କିଛି ସମୟ ଚେଇଁ ରହିଥିଲି । ହେଲେ ମନ୍ତ୍ରୀଙ୍କ ବ୍ୟକ୍ତିଗତ କର୍ମଚାରୀମାନଙ୍କ ସହିତ କଥାବାର୍ତ୍ତା କରିପାରିନଥିଲି ଲଜ୍ଜାରେ ! ଉଜନେ ଖଣ୍ଡେ ହେବେ ଟିକେଟ୍ ଚେକର୍‌ଙ୍କ ସାମନାରେ ହାରି ଯାଇଥିବାର ସ୍ମୃତି ହୁଏତ ଭୁଲିପାରିବେନି ବୋଲି ମନ୍ତ୍ରୀଙ୍କର ସେଇ ବିଶିଷ୍ଟ ବ୍ୟକ୍ତିଗତ କର୍ମଚାରୀ ଜଣକ ମୋ ସହିତ ଆଳାପ କରିବାର ଉତ୍ସାହ ପ୍ରଦର୍ଶନ କଲେନାହିଁ ।

ସକାଳୁ ସକାଳୁ ଗାଡ଼ି ନାଗପୁର ଆସିଗଲା । ଆମର ବଗିଟିକୁ ମେନ୍ ପ୍ଲାଟ୍‌ଫର୍ମରେ ଛାଡ଼ିଦେଇ ଖାଲି ଟ୍ରେନ୍‌ଟା ଚାଲିଗଲା । ପ୍ରାୟ ଘଣ୍ଟାଏ ଖଣ୍ଡେ ପରେ ଗ୍ରାଣ୍ଡ ଟ୍ରଙ୍କ୍ ଏକ୍ସପ୍ରେସ୍ ଆସିଲେ ଆମ ବଗିଟା ସେଥିରେ ଯୋଡ଼ିହେବାର ଅପେକ୍ଷାରେ ରହିଲି ।

ଗୋଟିଏ ବଗିରେ ଏକାବେଳେକେ ପାଞ୍ଚସାତଜଣ ସେଣ୍ଟ୍ରାଲ୍ ମିନିଷ୍ଟର୍, କିଛି ଏମ୍.ପି. ଏବଂ ମନ୍ତ୍ରୀମାନଙ୍କର ପ୍ରାଇଭେଟ୍ ସେକ୍ରେଟାରୀ ଯାଉଥିବାରୁ ପ୍ଲାଟ୍‌ଫର୍ମରେ ଖୁବ୍ ଚାଞ୍ଚଲ୍ୟ ଖେଳିଯାଉଥିଲା । ନାଗପୁରର ବହୁ ଗଣ୍ୟମାନ୍ୟ ବ୍ୟକ୍ତି ଏବଂ କିଛି ସର୍ବଜନ ନିନ୍ଦିତ ବ୍ୟକ୍ତି ହାଜର ହୋଇଥିଲେ ମନ୍ତ୍ରୀଙ୍କ ଦର୍ଶନ ନିମନ୍ତେ । ଆମ କମ୍ପାର୍ଟମେଣ୍ଟରେ କୌଣସି ମନ୍ତ୍ରୀ ନଥିଲେ ମଧ୍ୟ ପ୍ରାୟ ତିନିଚାରିଜଣ ମହାପୁରୁଷଙ୍କୁ ଉଠିବାର ଦେଖି ଆଶ୍ଚର୍ଯ୍ୟ ହେଲି । ଏମାନଙ୍କର ପ୍ରତ୍ୟେକଙ୍କର ଓଜନ ପ୍ରାୟ ଅଢ଼େଇଶହ-ତିନିଶହ କିମ୍ବା ଚାରିଶହ କ୍ୱିଣ୍ଟାଲ୍ ସରିକି ହେବ ଦେଖି ବୁଝିଗଲି ଏମାନଙ୍କ ବିଦ୍ୟା ଘରେ ଶନିଙ୍କ ଦୃଷ୍ଟି ଏବଂ 'ଅର୍ଥ' ଘରେ ଭାଗ୍ୟାଧିପତି ବୃହସ୍ପତି ତୁଙ୍ଗ ଶିଖରରେ ଅଛନ୍ତି ପରା । ଗତ ରାତିରେ ଯାହାଙ୍କ ସଙ୍ଗେ ବାଦାନୁବାଦ ହୋଇଥିଲା, ତାଙ୍କୁ ମିଃ ଲୁଟ୍‌ପାଟିୟା ସମ୍ବୋଧନ କରି, ପ୍ରଣାମ କରୁ କରୁ ମୋର ଦିବ୍ୟଚକ୍ଷୁ ଖୋଲିଗଲା । ଭୟ ଓ ଆତଙ୍କରେ ମୋର ବାକ୍‌ଶକ୍ତି ବି ଚାଲିଗଲା । ମନ୍ତ୍ରମୁଗ୍ଧ ହୋଇ ମୁଁ ଚାହୁଁ ଚାହୁଁ ଦେଖିଲି ବିପୁଳା ଧରିତ୍ରୀର ବିପୁଳ ତଥା ବିଶାଳ ସନ୍ତାନଗଣ ପ୍ରଚୁର ଖାଦ୍ୟଦ୍ରବ୍ୟ ଓ ପ୍ରେଜେଣ୍ଟେସନ୍ ଆଣି ଅଜାଡ଼ିବାରେ ଲାଗିଲେ ମିଃ ଲୁଟ୍‌ପାଟିୟାଙ୍କ ପାଦ ତଳେ ।

ଦିଲ୍ଲୀବାସୀ ମନ୍ତ୍ରୀପ୍ରବରଙ୍କ ସ୍ୱନାମଧନ୍ୟ ସେକ୍ରେଟାରୀ ସାହେବଙ୍କ ପ୍ରଭାବ ଆସମୁଦ୍ର ହିମାଚଳର ଭାରତବର୍ଷରେ ଯେ ପରିବ୍ୟାପ୍ତ— ଏ କଥା ମୋର ଆଉ ଅଛପା ରହିଲା ନାହିଁ ।

ଆଗନ୍ତୁକମାନଙ୍କ ମଧ୍ୟରୁ ଜଣେ ଲୁଟ୍‌ପାଟିୟାଙ୍କ କାନେକାନେ କଣ କହୁ କହୁ ମୁଁ ଶୁଣି ପକେଇଲି, 'ଆରେ ଏଇ ସାମାନ୍ୟ କଥା ପାଇଁ ଚିନ୍ତା କରିବେ ନାହିଁ ଆଜ୍ଞା । ଚନ୍ଦ୍ରକାନ୍ତକୁ ଟେଲିଫୋନ୍ କଲେ ଆପଣଙ୍କ ଘରକୁ ଯାଇ ଅର୍ଡ଼ର ପହଞ୍ଚେଇଦେବେ ।'

ଏତେଗୁଡ଼ାଏ ଖାଦ୍ୟପଦାର୍ଥକୁ ଦୁଇଜଣ ଖାଇବା ପାଇଁ ଲଜ୍ଜାବୋଧ କରୁଥିଲେ ନା କ'ଣ, ଏଣୁ ଅଗତ୍ୟା ଲୁଟ୍‌ପାଟୀୟା ମୋତେ କିଛି ଅଫର୍ କରିଥିଲେ । ମୁଁ କେବଳ ଯେ କୃତଜ୍ଞତାର ସହ ଖାଇଲି ତା ନୁହେଁ, ବରଂ କୃତାର୍ଥ ହୋଇ ଆଳାପ ମଧ୍ୟ ଆରମ୍ଭ କରିଦେଲି ।

ବିଶ୍ୱାସ କର - ଜି.ଟି. ଏକ୍ସପ୍ରେସ୍ ଆମଲା ପହଞ୍ଚୁ ନ ପହଞ୍ଚୁଣୁ ଆମ ଭିତରେ ହସ, ଥଟ୍ଟା ପରିହାସ ଆରମ୍ଭ ହେଇଗଲା । ସଂଧ୍ୟା ବେଳକୁ ଟ୍ରେନ୍ ଇଟାର୍ସି ଜଂକ୍‌ସନ୍ ପହଞ୍ଚିବା ପୂର୍ବରୁ ମୁଁ ଲୁଟ୍‌ପାଟୀୟାଙ୍କ ବର୍ଥକୁ ଚାଲିଯାଇଥିଲି ଏବଂ ତାଙ୍କ ସହିତ ମୋର ବନ୍ଧୁତ୍ୱ ଓ ହାର୍ଦ୍ଦିକତାର ତାହାହିଁ ହେଲା ଅୟମାରମ୍ଭ ।

ଆଜି ଆମ ଭିତରେ ବନ୍ଧୁତ୍ୱର ବନ୍ଧନ ଭିଲାଇ ଷ୍ଟିଲ୍‌ଠୁ ବି ଆହୁରି ଶକ୍ତ ଓ ଦୀର୍ଘସ୍ଥାୟୀ ବୋଲି କୁହାଯାଇପାରେ ।

ପାର୍ଲାମେଣ୍ଟର ସେଣ୍ଟ୍ରାଲ୍ ହଲ୍ ଅଥବା ଦିଲ୍ଲୀର ଅନ୍ୟାନ୍ୟ ବହୁ ଆଡ୍‌ଡାସ୍ଥଳୀରେ ଅନେକେ କହୁଥିବାର ଶୁଣିଛି ଯେ ଲୁଟ୍‌ପାଟୀୟାଙ୍କ ଭଳି କରପ୍ଟ୍ ଲୋକ ଆଉ ଏ ଦୁନିଆରେ କେହି ନାହିଁ । ଏକଥା ଶୁଣିଲେ ମୋର ସର୍ବାଙ୍ଗ ଜଳିଉଠେ । ଅସଂଖ୍ୟ ମଣିଷଙ୍କର ଯେଉଁସବୁ ଗୁଣ ନାହିଁ ଲୁଟ୍‌ପାଟୀୟାଙ୍କର ସେସବୁ ଅଛି, ତେଣୁ ତାଙ୍କର ଏତେ ନିନ୍ଦୁକ, ଏତେ ଶତ୍ରୁ । ଲୋକଙ୍କ ଉପକାର କରିବା ଲୁଟ୍‌ପାଟୀୟାଙ୍କ ଧର୍ମ ଏବଂ ତାର ପ୍ରତିଦାନରେ କୃତଜ୍ଞ ମଣିଷଙ୍କ ଦଳ ଧର୍ମରକ୍ଷା ନାଁରେ କିଛି ଦେବା ପାଇଁ ଚେଷ୍ଟା କରିଥାନ୍ତି । ଏଥିରେ କରପ୍‌ସନ୍ ଆସିଲା କୋଉଠୁ — ସେକଥା ମୁଁ ବୁଝିପାରେନା ।

ଦିନେ ସଂଧ୍ୟା ସମୟରେ ଜରୁରୀ ଏକ ନିଉଜ୍ ପଠାଇବା ପାଇଁ ସି.ଟି.ଓ.କୁ ଯାଇ ଫେରିବାବେଳେ ଏମିତି ମୂଷଳଧାରାରେ ବର୍ଷା ଆରମ୍ଭ ହେଲା ଯେ ଗାଡ଼ି ଚଳାଇବା ଅସମ୍ଭବ ହେଇପଡ଼ିଲା । ତଥାପି କିଛିବାଟ ଆଗେଇଲି, ହେଲେ ଆଉ ସାହସ ହେଲାନାହିଁ । ଶେଷରେ ଲୁଟ୍‌ପାଟୀୟାଙ୍କ ଘରକୁ ପଶିଗଲି । ଗାଡ଼ିରୁ ଓହ୍ଲେଇ ବାରାଣ୍ଡାରେ ପାଦ ଦଉଦଉ କୁକୁରଟା ଭୋ ଭୋ କିନା ବୋବାଳି ଛାଡ଼ିଲା । ଲୁଟ୍‌ପାଟୀୟା ଡ୍ରଇଂ ରୁମ୍‌ରୁ ବାହାରି ଆସି ମୋତେ ଦେଖୁ ଦେଖୁ ସାନନ୍ଦେ ଅଭ୍ୟର୍ଥନାର ସହ ଭିତରକୁ ଟାଣିନେଲେ ।

ବଡ଼ ସୋଫାଟାରେ ଗୋଟିଏ ପାଖରେ ମିସ୍ କୁମାର ବସିଥିଲେ । ସେଣ୍ଟର୍ ଟେବୁଲ୍‌ରେ ଥିଲା ଗୋଟିଏ ସ୍କଚ୍ ବୋତଲ ଏବଂ ଅଧାଭର୍ତ୍ତି ଦୁଇଟି ଗ୍ଲାସ୍ । ଲୁଟ୍‌ପାଟୀୟା ରାମ ସିଂହକୁ ଡାକ ଛାଡ଼ି ଆଉ ଗୋଟିଏ ଗ୍ଲାସ୍ ଓ ସୋଡ଼ା ଆଣିବାକୁ ବରାଦ କଲେ । ପଚାରିଲି, — 'ମିସେସ୍ କାହାନ୍ତି ?'

— 'ପ୍ରାୟ ସପ୍ତାହେ ହେବ ବମ୍ବେ ଯାଇଛନ୍ତି, ରହିବେ ମାସେ ଖଣ୍ଡେ । ହୁଏତ ଆହୁରି ସପ୍ତାହେ ପାଇଁ ବାଙ୍ଗାଲୋରକୁ ମଧ୍ୟ ଯାଇପାରନ୍ତି ।'

ତିନିଜଣ ମିଶି ବେଶ୍ କିଛି ସମୟ ଆଡ୍‌ଡା ଜମେଇଲୁ । ତିନି ରାଉଣ୍ଡ ଶେଷ ହେବା ପରେ ମୁଁ ଉଠି ଠିଆହେବାରୁ ମିସ୍ କୁମାର ମୋ ହାତ ଟାଣି ଧରିଲେ । କହିଲେ, 'ଏତେ ଜଲ୍‌ଦି କୁଆଡ଼େ ବାହାରୁଛନ୍ତି ମ ?'

ହାତଘଣ୍ଟାଟିକୁ ଚାହିଁ କହିଲି, 'ଦେଖୁଛ ଗେଟିଙ୍ଗ୍ ଇଲେଭେନ୍ ।'

—'ଡ୍ୟାମ୍ ୟୋର୍ ଇଲେଭେନ୍' । ବୋଲି ଲୁଟ୍‌ପାଟୀୟା ଚିତ୍କାର କରିଉଠିଲେ ।

ମିସ୍ କୁମାର ଜୋର୍ କରି ଟାଣି ବସେଇଦେଇ ଆଉ ଏକ ଗ୍ଲାସ୍ ଢାଳିଲେ ଏବଂ ଅତି ଆଦରରେ ମୋ ପାଟିରେ ଦୁଇଚାରିଟା କାଜୁନଟ ପୂରେଇଦେଲେ । ମିସ୍ କୁମାରଙ୍କ ଡାହାଣହାତକୁ ଚାପିଧରି କହିଲି, 'ତୁମେ କେଉଁ ମନ୍ତ୍ର ବଳରେ ପରକୁ ଏମିତି ଆପଣାର କରିପାର କୁହତ ?

ଉତ୍ତର ଦେଲେ ଲୁଟ୍‌ପାଟୀୟା, 'ବାଚ୍ଚୁ, ସେଇ ଗୁଣଟି ନଥିଲେ କି ଏଇ ଝିଅଟା ମୋତେ ଜୟ କରିପାରନ୍ତା ?'

'କୁହତ ବାଚ୍ଚୁ, କେମିତି ଭାବେ ମୋତେ ଏମିତି ଆପଣାର କରିପାରିଲେ ଆପଣଙ୍କ ବନ୍ଧୁ, କହିପାରିବ ନା ?' ଓଲଟା ପ୍ରଶ୍ନ ପଚାରିଲେ ମିସ୍ କୁମାର ।

ଲୁଟ୍‌ପାଟୀୟାଙ୍କ ବଙ୍ଗଳାରେ ଅଥବା ମିସ୍ କୁମାରଙ୍କ ଫ୍ଲାଟ୍‌ରେ ଏମିତି କେତେ ମଧୁର ସଂଧ୍ୟା ଏମାନଙ୍କ ସହିତ ମୁଁ କଟେଇଛି ତାର ହିସାବ ନାହିଁ । ମୋତେ ତ ଖୁବ୍ ଭଲଲାଗେ ଏହି ଦୁଇଜଣଙ୍କୁ । ଅଥଚ ଦିଲ୍ଲୀର ରାସ୍ତାଘାଟରେ ଏଇ ଦୁଇଜଣଙ୍କ ନାଁରେ କେତେ ଯେ କୁତ୍ସା ଏବଂ ରସାଳାପ ରଚନା ହୁଏ ।

ଚାରିବର୍ଷ ପୂର୍ବେ ଇଣ୍ଟରମିଡ଼ିଏଟ୍ ପାଶ୍ କରି ଅଠରବର୍ଷୀୟା ପଞ୍ଜାବୀ ଝିଅ ଅଞ୍ଜନା କୁମାର ଜଳନ୍ଧରରୁ ଦିଲ୍ଲୀକୁ ଆସିଥିଲା ଭାଗ୍ୟାନ୍ୱେଷଣରେ । ସେଦିନ କେହିହେଲେ ତାକୁ ସାହାଯ୍ୟ କରିନାହାନ୍ତି କି ସମବେଦନା ଜଣାଇନାହାନ୍ତି । ଲୁଟ୍‌ପାଟୀୟାଙ୍କ ସହିତ ଦୈବାତ୍ ଦେଖାହେବା ପରଠୁ ଝିଅଟାର ଅଦୃଷ୍ଟର ସିଂହଦ୍ୱାର ମୁକୁଳା ହେଇଗଲା । ପ୍ରଥମେ ଟଙ୍କା ଦେଢ଼ଶ ମାସିକ ଦରମାରେ ସରକାରୀ ଅଫିସ୍‌ରେ ଭର୍ତ୍ତି କରିଦେଲେ । ପ୍ରାୟ ଦେଢ଼ବର୍ଷ ଭିତରେ ଏକ ପ୍ରାଇଭେଟ୍ ଫାର୍ମରେ ପାଞ୍ଚଶରୁ ଆଠଶ ଗ୍ରେଡ୍‌ରେ ଭର୍ତ୍ତି କରେଇ ଦିଅନ୍ତି ଏଇ ସର୍ବନିନ୍ଦିତ ଲୁଟ୍‌ପାଟୀୟା ।

ସମସ୍ତେ ଜାଣନ୍ତି ନାହିଁ, ମିସ୍ କୁମାରଙ୍କ ମନିଅର୍ଡ଼ର ଉପରେ ନିର୍ଭର କରନ୍ତି ତାର ବାପା-ମା ଓ ଛୋଟଭାଇ । ଜଳନ୍ଧରରେ ବାସ କରି କେହି କ'ଣ ଭାବି ଦେଖିଛି, ଲୁଟ୍‌ପାଟୀୟା ସାହାଯ୍ୟ କରିନଥିଲେ ଅଞ୍ଜନାର କି ଅବସ୍ଥା ହେଇଥାନ୍ତା ଆଉ କ'ଣ ହେଇଥାନ୍ତା ଏଇ ତିନୋଟି ପ୍ରାଣୀଙ୍କର ? ନିଶ୍ଚୟ କେହି ଭାବିନାହିଁ । ଏଇ ଦେଖନ୍ତୁ ନା, ମିସେସ୍ ଲୁଟ୍‌ପାଟୀୟା ବର୍ତ୍ତମାନ୍ ଦିଲ୍ଲୀରେ ନାହାନ୍ତି । ଲୁଟ୍‌ପାଟୀୟାଙ୍କ ସାରା ବଙ୍ଗଳାଟା ଖାଲିପଡ଼ିଛି । ସେଇଥିପାଇଁ ତ ଲୁଟ୍‌ପାଟୀୟା ମିସ୍ କୁମାରଙ୍କୁ ଆଣିରଖିଛନ୍ତି ତାଙ୍କ ନିଜ

ଆସ୍ଥାନରେ । ଟଙ୍କା ଦେଢ଼ଶ ଦୁଇଶହର ସାଶ୍ରୟ ହବ ମିସ୍ କୁମାରଙ୍କ । ଏଥିରେ କ'ଣ ଅନ୍ୟାୟଟା ହେଇଗଲା କୁହନ୍ତୁ ତ ? ବାଜେ କଥା ।

ପାର୍ଲିଆମେଣ୍ଟରୁ ଦିନେ ଲୁଟ୍‌ପାଟୀୟା ମୋତେ ଜୋରଜବରଦସ୍ତ କରି ନେଇଗଲେ କନଟ୍‌ପ୍ଲେସ୍‌ର ଏକ ରେଷ୍ଟୁରାଣ୍ଟକୁ । ଜବ୍‌ବର ଲଞ୍ଚଟାଏ ଖୁଆଇଲେ, କାରଣ ପଚାରିବାରୁ କହିଲେ, ଝୁନ୍‌ଝୁନ୍‌ୱାଲା ଜୋର୍ କରି ବଣ୍ଡଲ୍‌ଟାଏ ଦେଇଗଲେ-ବହୁତ ମନାକଲି— ହେଲେ ଶୁଣିଲେ ନାହିଁ । କହିଗଲେ ଏଇଟାତ ତୁମ ପାଇଁ ଦଉନି, ଏଇଟା ବେବୀର ଖେଳନା କିଣିବାକୁ ତାର ଚାଚାଜୀଙ୍କର ସାମାନ୍ୟ ଏକ ପ୍ରେଜେଣ୍ଟେସନ୍ ।

ଲୁଟ୍‌ପାଟୀୟା ଖୁବ୍ ବ୍ୟସ୍ତ ଥିଲେ ସେତେବେଳେ । ଲଫାଫାଟା ଖୋଲି ଦେଖିବାର ସମୟ ପାଇନଥିଲେ । ଟିକିଏ ଅବସର ମିଳିବାରୁ ଲଫାଫା ଖୋଲି ଦେଖନ୍ତି ତ ଦଶଖଣ୍ଡ ନୋଟ୍ । ଏତେଗୁଡ଼ାଏ ଟଙ୍କା ବେବୀ ପାଇଁ ଖର୍ଚ୍ଚ କରିବାର କୌଣସି କାରଣ ନଦେଖି ମୋତେ ଡାକି ଆଣିଥିଲେ ଲଞ୍ଚ୍ ଖୁଆଇବାକୁ । ମିସ୍ କୁମାରଙ୍କୁ କିଛି ସମୟ ପାଇଁ ନେଇ 'କୁଲୁ' ବୁଲେଇ ଆଣିଲେ; କେହି କିନ୍ତୁ କହିବେ ନାହିଁ ଯେ ଲୁଟ୍‌ପାଟୀୟାଙ୍କ ଦୟାରୁ ଝୁନ୍‌ଝୁନ୍‌ୱାଲାଙ୍କର ଏଡ଼େବଡ଼ ଟେକ୍ସଟାଇଲ୍ ମିଲ୍‌ଟା ରକ୍ଷା ପାଇଗଲା; ତାଙ୍କର ଲକ୍ଷ ଲକ୍ଷ ଟଙ୍କାର ଆୟର ବାଟଟି ଖୋଲାରହିଲା ଏଇ ସର୍ବନିନ୍ଦିତ ମଣିଷଟାର ଚେଷ୍ଟାରୁ ଏବଂ ଦୟାରୁ । ଅକୃତଜ୍ଞ ମଣିଷଦଳ ଏଇ ସାମାନ୍ୟ ହଜାରେ ଟଙ୍କାର ଚିନ୍ତାରେ ପାଗଳ ।

ଏଇ ତ ଗତବର୍ଷର କଥା କହୁଛି । ହାଲୁୟା ସାହେବ ଏକ ସେମିନାର୍‌ରେ ପ୍ରିଜାଇଡ୍ କରିବାକୁ ସିମଳା ଯାଇଥିଲେ । ଆମର ଲୁଟ୍‌ପାଟୀୟା ମଧ୍ୟ ତାଙ୍କ ସାଙ୍ଗରେ ଥିଲେ । ଶହେଖଣ୍ଡେ ହେବେ ମହିଳା ଓ ପୁରୁଷଙ୍କ ମଧ୍ୟରେ ମିସେସ୍ ନେଗୀ ମଧ୍ୟ ସେହି ସେମିନାର୍‌ରେ ଜଏନ୍ କରିଥିଲେ ଏବଂ ଲୁଟ୍‌ପାଟୀୟାଙ୍କ ସାଙ୍ଗରେ ତାଙ୍କର ଆଳାପ ଓ ଘନିଷ୍ଠତା ଜମିଥିଲା । ସେମିନାର୍ ଶେଷ ହେବାର ତିନିଚାରିଦିନ ଆଗରୁ ଦିନେ ଡିନର୍‌ରେ ମିସେସ୍ ନେଗୀ ଲୁଟ୍‌ପାଟୀୟାଙ୍କୁ ନିମନ୍ତ୍ରଣ କରିଥିଲେ ଏବଂ ସେଇ ସମୟରେ ଲୁଟ୍‌ପାଟୀୟା ଜାଣିପାରିଥିଲେ ଯେ ଭଦ୍ରମହିଳା ଜଣକ ନିଃସନ୍ତାନ ବିଧବା । ମିସେସ୍ ନେଗୀଙ୍କ ବୟସ ମଧ୍ୟ ସେମିତି ବେଶୀ କିଛିନୁହେଁ— ପଇଁତିରିଶ କିମ୍ବା ଛତିଶ ହବ କି କଣ । ଲୁଟ୍‌ପାଟୀୟାଙ୍କ ମନଟା ଭିଜି ଯାଇଥିଲା ଏଇ ନିଃସନ୍ତାନ ବିଧବାଙ୍କ ଦୁଃଖରେ । ଜଣେ ଦରଦୀ ତଥା ସମ୍ବେଦନଶୀଳ ମନ ଓ ମଣିଷଙ୍କୁ ପାଇ ମିସେସ୍ ନେଗୀ ତାଙ୍କ ଜୀବନର ସମସ୍ତ କାହାଣୀ ଶୁଣେଇଥିଲେ ଲୁଟ୍‌ପାଟୀୟାଙ୍କୁ । ଲୁଟ୍‌ପାଟୀୟା ମୁହଁରେ କିଛି କହିପାରିନଥିଲେ । ଆଦର କରି ମିସେସ୍ ନେଗୀଙ୍କର ମୁଣ୍ଡଟିକୁ ନିଜ ଛାତି ଉପରକୁ ଟାଣିଆଣି କେବଳ ସାନ୍ତ୍ୱନା ଜଣାଇଥିଲେ ନୀରବରେ । ବିଧବା ହେବା ପରେ ମିସେସ୍ ନେଗୀଙ୍କ ଜୀବନରେ ଏମିତି ରାତିଟିଏ ଆସିନଥିଲା- ଆସିନଥିଲା ଏମିତି ମଧୁମୟ ଘନାନ୍ଧକାର ପାର୍ବତ୍ୟ ରାତିଟିଏ ।

ଆଉ କେହି ଜାଣନ୍ତୁ ନଜାଣନ୍ତୁ ମୁଁ ଜାଣେ ଲୁଟ୍‌ପାଟୀୟା ଛଳେ ବଳେ କୌଶଳେ ମିସେସ୍ ନେଗୀଙ୍କର ଉପକାର କରିଥିବେ ନିଶ୍ଚୟ । ଏଇ ତ କେତେମାସ ପୂର୍ବେ ମିସେସ୍

ନେଗୀଙ୍କର ଚାରିକୋଠରୀଆ ଘରଟିକୁ ସରକାରଙ୍କ ତରଫରୁ ମାସିକ ନଅଶହ ପଚାଶଟଙ୍କା ଭଡ଼ାରେ ରିକ୍ୱିଜିସନ୍‌ର ବ୍ୟବସ୍ଥା କରାଇଛନ୍ତି । ଆଉ କେହି କ'ଣ ଏପରି ଉପକାର କରିପାରିଥାନ୍ତେ ? କିନ୍ତୁ ଲୋକଟାର ଏମିତି ଦୁର୍ଭାଗ୍ୟ ଯେ କିଛିଦିନ ଭିତରେ ହିଁ ଏକଥାକୁ ନେଇ ଦିଲ୍ଲୀ ସାରା କୁତ୍ସାରଟନା ହବ ହିଁ ହବ ।

ବିଶ୍ୱାସ କର, ଲୁଟ୍‌ପାଟୀୟା କଥା ଚିନ୍ତା କଲେ ମୋର ବାରମ୍ବାର ମନେପଡ଼ନ୍ତି ବିଦ୍ୟାସାଗର ମହାଶୟ; ସେ ଠିକ୍ କହିଯାଇଛନ୍ତି ଉପକାର ନକଲେ ତ କେହି ଶଳା କୁହେନା । କି ବିଚିତ୍ର ଏଇ ଦେଶ !

ଜାଣିଚ ନା ମେମ୍ ସାହେବ, ଶୁଣିଛି ଦିଲ୍ଲୀରେ ଏପରି ବହୁତ ପରୋପକାରୀ ଲୁଟ୍‌ପାଟୀୟା ଅଛନ୍ତି । ଭାରତବର୍ଷ ସ୍ୱାଧୀନ ହେବା ପରେ ଦେଶଟା ଯେ 'ଦିଲ୍ଲୀ ମେଲ୍' ପରି ତୀର ବେଗରେ ଛୁଟି ଚାଲିଛି ଅଗ୍ରଗତି ଆଡ଼କୁ, ଏ ବିଷୟରେ ନିଶ୍ଚୟ କୌଣସି ଭାରତବାସୀଙ୍କ ସନ୍ଦେହ ନାହିଁ । ତାଛଡ଼ା ଶହଶହ ସାହେବ ବି ତ ଆମମାନଙ୍କୁ ସାର୍ଟିଫିକେଟ୍ ଦେଇଯାଇଛନ୍ତି; ତେଣୁ ସନ୍ଦେହର ଅବକାଶ ରହିଲା କୋଉଠି ? ଏଇ ଯାତ୍ରାପଥରେ ରାଜଧାନୀ ଦିଲ୍ଲୀରେ ଏବଂ ଅନ୍ୟାନ୍ୟ ସହର ତଥା ନଗରମାନଙ୍କରେ ଏଭଳି ବହୁତ ମିସେସ୍ ପ୍ରଧାନ, ମିସ୍ କୁମାର ଏବଂ ମିସେସ୍ ନେଗୀ ଜନ୍ମ ନେଇଛନ୍ତି । ସରକାରୀ ଦପ୍ତରମାନଙ୍କ ଯେତେସବୁ ପରୋପକାରୀ ଲୁଟ୍‌ପାଟୀୟା ନୀରବରେ, ନିଭୃତରେ, ନିଃଶବ୍ଦରେ ତଥା ସର୍ବୋପରି ନିଃସ୍ୱାର୍ଥପର ଭାବରେ ଜନନୀ ଜନ୍ମଭୂମିର ସେବା କରିଚାଲିଛନ୍ତି ସେମାନଙ୍କୁ କ'ଣ କୌଣସି ପୁରସ୍କାର ଏଇ ସମାଜ କେବେବି ଦେବ ନାହିଁ ?

ତୁମେ ମୋର ପ୍ରାଣଭରା ସ୍ନେହ ନିଅ ।

— ତୁମରି ବାଚ୍ଛୁ

ମେମ୍ ସାହେବ,

ତୁମର ଚିଠି ପାଇଲି । ପାଇଲି ବି ଅନ୍ତରରେ ତୁମକୁ ପାଇବାର ମିଠା ଅନୁଭୂତି । ଶାରଦୀୟ (ପୂଜା) ଉତ୍ସବରେ ଲୋକେ ଯେତେବେଳେ ଆନନ୍ଦରେ ମତୁଆଲା ହେଉଥିଲେ, ସେତେବେଳେ ତୁମକୁ ପାଖରେ ନପାଇବାର ଦୁଃଖରେ ମୋ ମନର ପ୍ରତିଟି ତନ୍ତ୍ରୀରେ ବିଷଣ୍ଣତାର ସ୍ୱର ବାଜି ଉଠିଥିଲା । ଆଜି ତୁମ ଚିଠିରୁ ତୁମର ଫେରିଆସିବାର ସଠିକ୍ ଦିନଟା ଜାଣିପାରି ମନେହୁଏ ମୋ ଘରେ ବି ସତେ କି ଦେବୀଙ୍କର ଆବିର୍ଭାବ ହେବ, ଚାରିଦିଗରେ ବାଜିଉଠିବ ମଙ୍ଗଳ ଶଙ୍ଖଧ୍ୱନି ! ଦୁଃଖର ମେଘ ଅପସରିଯିବ । ବିଛାଡ଼ି ହୋଇପଡ଼ିବ ଆନନ୍ଦରେ ରଶ୍ମି ମୋ ଜୀବନ ଆକାଶରେ ।

ମୋର ଏଇ ଚିଠିଟି ତୁମର ହସ୍ତଗତ ହେବା ଆଗରୁ ତୁମର ପରୀକ୍ଷା ସରିଯାଇଥିବ; ପରୀକ୍ଷାର ଫଳ ବି ବାହାରିସାରିଥିବ । ତୁମର ସଫଳତା ପାଇଁ ତୁମର

ସହପାଠୀଗଣ ତୁମକୁ ଅଭିନନ୍ଦନ ଜଣାଉଥିବେ । କେତେ କେତେ ଉପହାର ଦେଉଥିବେ ତୁମକୁ । ନାନା ଦେଶର ଛାତ୍ରଛାତ୍ରୀଙ୍କ ମଧ୍ୟରେ ପାରସ୍ପରିକ ଠିକଣା ଆଦାନପ୍ରଦାନ ଚାଲିଥିବ । ତାପରେ ଆଉ ବା କେତେଟା ଦିନ ତୁମ ହାତରେ ଥିବ ? ଏଣୁତେଣୁ ପ୍ରେଜେଣ୍ଟେସନ୍ କିଣୁ କିଣୁ ଏବଂ ମୋର ମନ ପସନ୍ଦର ଚିଜଟିଏ କିଣୁ କିଣୁତ ନଭେମ୍ବର ୨ ତାରିଖ ଆସିଯିବ । ସେଦିନ ରାତିରେ ନିଶ୍ଚୟ ତୁମର ଲ୍ୟାଣ୍ଡ ଲେଡ଼ି ତୁମକୁ ଡିନର ଖୁଆଇବେ, ଟୋକୋନ୍ ପ୍ରେଜେଣ୍ଟେସନ୍ ମଧ୍ୟ ଦେବେ । ତୁମେ କିଛିଟା ଆନନ୍ଦ, କିଛିଟା ବିଚ୍ଛେଦ ବେଦନାର ଆବେଗରେ ବୃଦ୍ଧାଙ୍କୁ କୁଣ୍ଢେଇ ଧରିବ - ଧନ୍ୟବାଦ ପରେ ଧନ୍ୟବାଦ ଜଣାଇବ ଏବଂ କହିବ ଚିରଦିନ ତାଙ୍କ କଥା ମନେ ରହିଥିବ । ନୁହେଁ କି ?

ତାପରେ ନଭେମ୍ବର ୩ ତାରିଖ । ସେଦିନ ତ ତୁମର ଟିକିଏ ବି ତର ନଥିବ । ବ୍ରେକ୍‌ଫାଷ୍ଟ ଖାଇବାକୁ ତୁମର ବେଳ ହବ କି ନାହିଁ ମୋର ସନ୍ଦେହ ହଉଛି । ବନ୍ଧୁବାନ୍ଧବଙ୍କଠାରୁ ବିଦାୟ ନଉ ନଉ ଏୟାରପୋର୍ଟରେ ରିପୋର୍ଟିଂ ଟାଇମ୍ ହେଇଯିବ । ପ୍ୟାରିସ୍, ରୋମ୍, କାଏରୋ ଏବଂ କରାଚୀରେ ନିଶ୍ଚୟ ତ ଦିନେ ଦିନେ କଟେଇବ । ନଭେମ୍ବର ୬ ତାରିଖ ରାତିର ଅନ୍ଧାରକୁ ବି ବିଦାୟ ଦବାକୁ ପଡ଼ିବ । ତାପରେ ନଭେମ୍ବର ୭ ତାରିଖର ସୂର୍ଯ୍ୟ ଉଇଁବା ପୂର୍ବରୁ ତୁମର ଜେଟ୍‌ପ୍ଲେନ୍ ପାଲାମର ମାଟିରେ ଓହ୍ଲେଇବ । ତାପରର କଥା ଆଉ ଭାବିପାରୁନି । ସେଦିନର ସୋ, ଆନନ୍ଦ ଉତ୍ସବର କଥା ମନକୁ ଆସୁ ଆସୁ ମୋର ସର୍ବାଙ୍ଗ ଶିହରି ଉଠୁଛି, ପ୍ରାଣର ଆନନ୍ଦ ମୁଖମଣ୍ଡଳରେ ବିଛାଡ଼ି ହେଇଯାଇଛି; ସେଦିନ ତୁମକୁ ପ୍ରଥମେ କଣ କହିବି; କଣ ଖୁଆଇବି, କଣ ପ୍ରେଜେନ୍‌ଟେସନ୍ ଦେବି, କାହା କାହା କଥା କହିବି ସେଇସବୁ କଥା ଭାବିବାକୁ ଗଲେ ମୁଣ୍ଡଟା ମୋର ଚକ୍‌କର ଖାଉଛି । ସେଇଥିପାଇଁ ସେସବୁ କଥା ଭାବିପାରୁନି । ଦେଖାଯାଉ, ପରେ ଭାବିଦେଖିବି ।

...ଏକ ଜରୁରୀ କାମରେ ପ୍ରେସିଡ଼େଣ୍ଟସ୍ ଇଷ୍ଟେଟକୁ ଯାଇଥିଲି ଜଣେ ବନ୍ଧୁଙ୍କୁ ଭେଟିବି ବୋଲି । କାମଟା ଚଟାପଟ୍ ହେଇଗଲା । କଣ ଭାବି ଅଟକିଗଲି ତିନ୍ ମୂର୍ତ୍ତି କଡ଼ରେ ସାଉଥ୍ ଏଭିନ୍ୟୁରେ । ଆଡ୍‌ଡା ମାରୁମାରୁ ନିଶା ଚଢ଼ିଯାଏ ଏବଂ ସେଇ ନିଶାର ଜୋର୍‌ରେ ନିକଟସ୍ଥ ଏକ ରାସ୍ତାରେ ରୋହତ୍‌ଗୀ ସାହେବଙ୍କ ଘରେ ପଶିଗଲି ।

ଟିକିଏ ରାତି ହେଇଯାଇଥିଲା - ନଅଟା ପନ୍ଦର ମିନିଟ୍ କି ସାଢ଼େ ନ'ଟା ହବ କି କ'ଣ । ଦିଲ୍ଲୀଭଳି ନିୟମତାନ୍ତ୍ରିକ ରାଜଧାନୀରେ ଏପରି ସମୟରେ କୌଣସି ମୁରବୀ ସ୍ଥାନୀୟ ଜଣେ ଲୋକଙ୍କ ଘରେ ଅପ୍ରତ୍ୟାଶିତ ଭାବରେ ହାଜର୍ ହେଇଯିବା କେବଳ ଯେ ଅନ୍ୟାୟ ତା ନୁହେଁ, ମହା ଅପରାଧ । କୌଣସି ନିର୍ଦ୍ଦିଷ୍ଟ ଚିନ୍ତା ନକରି ବି ଏକ ଖିଆଲରେ ଯାଇ ହାଜର୍ ହେଇଥିଲି ସେଠି । ଗାଡ଼ିରୁ ଓହ୍ଲେଇ ବାରଣ୍ଡାରେ ପାଦ ଦଉଦଉ ନଜର ପଡ଼ିଲା, ଅଫିସ୍ ଘରେ ଆଲୁଅ ଜଳୁନି । ବୁଝିଗଲି- ରାତି ହେଇଯାଇଛି, ପ୍ରାଇଭେଟ୍ ସେକ୍ରେଟାରୀ, ପର୍ଶନାଲ୍ ଆସିଷ୍ଟାଣ୍ଟ, ଷ୍ଟେନୋଗ୍ରାଫର୍ ପ୍ରଭୃତି ବିଦାୟ ନେଇଯାଇଛନ୍ତି । ଅଭ୍ୟାଗତର ଆଗମନର ବାର୍ତ୍ତାର ସଙ୍କେତ ଧ୍ୱନି- କଲିଂ ବେଲ୍-

ବଜାଇବାକୁ ଲଜ୍ଜାବୋଧ କଲି, କିନ୍ତୁ ତା ଅପେକ୍ଷା ଅଧିକ ଲଜ୍ଜିତ ମନେକଲି ଫେରିଯିବାକୁ । ବେଲ୍ ବଜେଇବି କି ନବଜେଇବି ଭାବୁଭାବୁ ହଠାତ୍ କିଏ ପଛ ଆଡୁ ମୋ କାନ୍ଧରେ ହାତ ରଖିଲେ । ଚମକି ଉଠିଲି । ଫେରି ଚାହିଁ ଦେଖେ ତ ସ୍ୱୟଂ ମିଃ ରୋହତ୍‌ଗୀ ।

'କେମିତି ଅଛ ବାଛୁ ?' ଖୁବ୍ ନରମ ଗଳାରେ ପଚାରିଲେ ମିଃ ରୋହତ୍‌ଗୀ ।

'ମୋଟାମୋଟି ଭଲ ଅଛି ।' ଉତ୍ତର ଦେଲି ।

ଦୀର୍ଘ ନିଃଶ୍ୱାସଟିଏ ଛାଡ଼ି କହିଲେ, 'ଦ୍ୟାଟ୍‌ସ୍ ଗୁଡ୍ ।'

ଏତେ ରାତିରେ ହଠାତ୍ ଆସିଯାଇଥିବାରୁ ମୁଁ ଖୁବ୍ ଲଜ୍ଜା ବୋଧ କରୁଥିଲି । ଅପରାଧୀ ସ୍ୱରରେ କହିଲି— 'ଏତେ ରାତିରେ ଆପଣଙ୍କୁ ବିରକ୍ତକଲି ।'

'ନଟ୍ ଏଟ୍ ଅଲ୍', କହି ଆଶ୍ୱାସନା ଦେଲେ ମିଃ ରୋହତ୍‌ଗୀ । ତାପରେ କହିଲେ, 'ଦେଖ ବାଛୁ, ଦିନସାରା କେତେ କେତେ ଲୋକ ଆସନ୍ତି ମୋ ପାଖକୁ ନାନାଦି କାମ ନେଇ । କିନ୍ତୁ ଦିନ ହଜିଗଲେ ମୁଁ ଯେତେବେଳେ କେବଳ ମୋର ହେଇଯାଏ ସେତେବେଳେ କେହି ମୋର ଖୋଜ୍ ନିଅନ୍ତି ନାହିଁ । କେହି ଜାଣିବାକୁ ଚାହାନ୍ତି ନାହିଁ ମୁଁ ହସୁଛି କି ଖେଳୁଛି କି ଆଖିରୁ ଲୁହର ବନ୍ୟା ଛୁଟଉଛି । ପୁଣି ଏକ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲେ, 'ସୋ ଆଇ ଆମ୍ ଭେରି ଗ୍ଲାଡ୍ ଯେ ତୁମେ ଆସିଛ ।'

ମିଃ ରୋହତ୍‌ଗୀଙ୍କ ପଛେ ପଛେ ଡ୍ରଇଂରୁମ୍‌କୁ ଯାଇ ବସିଲି । 'ମିଃ ରୋହତ୍‌ଗୀ ଭିତରକୁ ଗଲେ, ବେହେରାକୁ କଫି ବରାଦ କରି ଫେରିଆସିଲେ । ମୋରି ପାଖ ସୋଫାରେ ବସିପଡ଼ିଲେ ।

କିଛିସମୟ ଚୁପ୍‌ଚାପ୍ କଟିଗଲା । ଏକ ଲମ୍ବା ଆଉ ମୋଟା ଚୁରୁଟ୍‌ରେ ନିଆଁ ଧରାଇଲେ ମିଃ ରୋହତ୍‌ଗୀ । ଆପେ ଆପେ କେତେଥର ଟାଣି ଟାଣି ଡ୍ରଇଂ ରୁମ୍‌ଟିକୁ ଭରିଦେଲେ ଧୂଆଁରେ । କୋଠରୀଟିରେ  ଉଜ୍ଜ୍ୱଳ ଆଲୁଅ ନଥିଲା । ଉପରନ୍ତୁ ଚୁରୁଟ୍ ଧୂଆଁରେ ମିଃ ରୋହତ୍‌ଗୀଙ୍କ ମୁହଁଟିକୁ ସ୍ପଷ୍ଟ ଦେଖିପାରୁ ନଥିଲି । ଯେତେବେଳେ ଚୁରୁଟ୍ ଧୂଆଁର ମେଘ ପାତଳେଇଗଲା, ସେତେବେଳେ ମିଃ ରୋହତ୍‌ଗୀଙ୍କୁ ଦେଖି ଚମକି ପଡ଼ିଲି; ମନେହେଲା, ସତେକି ଏକ ନିଷ୍ପ୍ରାଣ ପଥରର ମୂର୍ତ୍ତି ହୋଇ ବସିଛନ୍ତି ସେ ।

ଜାଣିଚ ମେମ୍ ସାହେବ, କିଛି ସମୟ ପରେ ସେଇ ପଥର ମୂର୍ତ୍ତିରେ ପ୍ରାଣ ଫେରିଆସିଥିଲା, କଥା କହିବା ବି ଆରମ୍ଭ କରିଦେଲା ସେଇ ମୂର୍ତ୍ତି ..... କହିଥିଲେ ତାଙ୍କର ସାଂସାରିକ ଜୀବନର ବ୍ୟର୍ଥତାର ଇତିହାସ । ସେଦିନର ଗଭୀର ରାତ୍ରୀରେ ସେଇ ବଙ୍ଗଳାରେ ଭାରତବର୍ଷର ଅନ୍ୟତମ ଶ୍ରେଷ୍ଠ କ୍ଷମତାସମ୍ପନ୍ନ ପୁରୁଷ ମିଃ ରୋହତ୍‌ଗୀ ଭୁଲିଯାଇଥିଲେ ତାଙ୍କର ପଦମର୍ଯ୍ୟାଦାକୁ, ଆସମୁଦ୍ର ହିମାଚଳ ବିସ୍ତୃତ ତାଙ୍କର କ୍ଷମତା, ପ୍ରତିପତ୍ତି, ତାଙ୍କର ସବୁକିଛି । ଆହୁରି ଅନେକ କିଛି ଭୁଲିଯାଇଥିଲେ ସେଇ ରାତିରେ, ଭୁଲିଥିଲେ ପାର୍ଲାମେଣ୍ଟକୁ, ଭୁଲିଯାଇଥିଲେ ସେକ୍ରେଟାରୀମାନଙ୍କୁ, ଭୁଲିଯାଇଥିଲେ ଲକ୍ଷ ଲକ୍ଷ ତୋଷାମଦିଆ ଆଉ ଖୋସାମଦିଆମାନଙ୍କୁ । ଶିଶୁଟିଏ ଭଳି ଆଖିରୁ ଲୁହ

ଗଡ଼େଇଥିଲେ ମିଃ ରୋହତ୍‌ଗୀ- ଶୁଣେଇ ଚାଲିଥିଲେ ନିଜର ଜୀବନ ଉପନ୍ୟାସର କାହାଣୀକୁ ।

...ମିଃ ରୋହତଗୀ ଯେତେବେଳେ ଜଣେ ଛାତ୍ର ଭାବରେ ଲଣ୍ଡନରେ ଥିଲେ, ସେତେବେଳେ ସେ ଥରେ ଖୁବ୍ ଅସୁସ୍ଥ ହୋଇପଡ଼ିଥିଲେ । ସତୀର୍ଥ ନରେନ୍ଦ୍ର ବର୍ମା ତାଙ୍କର କାକା ଡଃ ବର୍ମାକୁ ଆଣି ଛୁଟିଆସିଥିଲେ ବନ୍ଧୁଙ୍କ ଚିକିତ୍ସା ପାଇଁ । ଅବସ୍ଥା ଯେତେବେଳେ ଅତି ସଙ୍କଟାପନ୍ନ ହେଲା ସେତେବେଳେ ବର୍ମା ପରିବାରର ସମସ୍ତେ ଚାଲିଆସିଥିଲେ ରୋହତଗୀଙ୍କ ରୋଗଶଯ୍ୟା ପାଖକୁ । ବୟାଳିଶ ଦିନ ଯାଏଁ ଜୀବନମୃତ୍ୟୁର ଲଢ଼େଇ ଲଢ଼ି ଲଢ଼ି ରୋଗମୁକ୍ତ ହେଲେ ରୋହତ୍‌ଗୀ । ମିସେସ୍ ବର୍ମାଙ୍କ ହାତରୁ ପଥ୍ୟଗ୍ରହଣ କଲେ ।

ପ୍ରାୟ ଦୁଇ ସପ୍ତାହ ବାଦ୍ ରୋହତ୍‌ଗୀ ବାପା, ମା'ଙ୍କୁ ସବୁ ଜଣେଇ ଚିଠି ଲେଖିଲେ, କୌଣସି ଉତ୍ତର ପାଇଲେ ନାହିଁ । ଉତ୍ତର ପାଇଲେ ଡାଃ ବର୍ମା । ଦୀର୍ଘ ଚିଠିର ଶେଷରେ କିଶୋରୀଲାଲ୍ ରୋହତ୍‌ଗୀ ଲେଖିଥିଲେ- 'ଡାକ୍ତର, ଏଣିକି ମୋ ପୁଅ ଏକା ମୋର ନୁହଁ, ସେ ତୁମର ବି ସନ୍ତାନ, ତାର ଭଲମନ୍ଦ, ମଙ୍ଗଳ ଅମଙ୍ଗଳ, ଦାୟ-ଦାୟିତ୍ୱ ତୁମର ଓ ମୋର ଆମ ଦୁଇଜଣଙ୍କର ସମାନ ସମାନ । ଭାଇ, ଏଇ ଦାୟିତ୍ୱ ଗ୍ରହଣ କରି ମୋତେ ଋଣମୁକ୍ତ କର ।'

ତାହା ଥିଲା ଆରମ୍ଭ । ରୋହତ୍‌ଗୀ ତାଙ୍କର ଭଡ଼ାଘର ଛାଡ଼ିଦେଇ ଆସି ଡାକ୍ତର ବର୍ମାଙ୍କ ସଂସାରରେ ଏକ ସନ୍ତାନର ମର୍ଯ୍ୟାଦା ନେଇ ଜୀବନ ଆରମ୍ଭ କରିଥିଲେ ।

ଦୀର୍ଘଦିନର ନିବିଡ଼ ସାନ୍ନିଧ୍ୟ ଯୋଗୁଁ ରୋହତ୍‌ଗୀ ଯେ କେବେ କେଉଁ ମୁହୂର୍ତ୍ତରେ ଡାକ୍ତରନନ୍ଦିନୀ ମୃଣାଳିନୀ ବର୍ମା ନିକଟରେ ଆତ୍ମସମର୍ପଣ କରିଥିଲେ, ସେଇ କଥା ଆଜି ଆଉ ମନରେ ନାହିଁ । ତେବେ ମନେଅଛି ଛୋଟିଆ ଛୋଟିଆ ବହୁତ କାହାଣୀ ।

'ଜାଣିଚ ବାଚ୍ଚୁ, ଫାଇନାଲ୍ ଇୟର୍‌ରେ ପ୍ରଫେସର୍ ହ୍ୟାରଲ୍‌ଡ୍ ଲ୍ୟାସ୍କି ଅନେକ ନୋଟ୍‌ସ ଦେଉଥିଲେ । ସେଗୁଡ଼ିକ ସବୁ ପଢ଼ିବାକୁ ହିଁ ପଡ଼େ । ପ୍ରଫେସର୍ ହ୍ୟାରଲ୍‌ଡ ଲ୍ୟାସ୍କି ନୋଟ୍‌ସବୁ ନପଢ଼ି କିଏ ରହିପାରେ କୁହତ ଭଲା ? କିନ୍ତୁ ସେଇସବୁ ନୋଟ୍ ପଢ଼ିଲେ ଅନ୍ୟାନ୍ୟ ବହିପତ୍ର ପଢ଼ିବାକୁ ସମୟ ହୁଏନା । ଲାଇବ୍ରେରୀରୁ ଯେଉଁ ବହିପତ୍ର ଆଣେ ସେଗୁଡ଼ିକର ନୋଟ୍‌ସ୍ କରିବାକୁ ସମୟ ମିଳେନା । ସେଗୁଡ଼ିକୁ ସେଇମିତି ଫେରେଇଦିଏ ଲାଇବ୍ରେରୀକୁ । ଏକ୍‌ଜାମିନେସନ୍‌ର ମାସକ ଆଗରୁ ଦିନେ ପଢ଼ା ଟେବୁଲ୍‌ରେ ଅନେକଗୁଡ଼ିଏ ଖାତା ଦେଖିବାକୁ ପାଇଲି । ଖୋଲି ଦେଖେଁ ସବୁ ନୋଟ୍‌ସ୍‌ରେ ଭର୍ତ୍ତି । ହସ୍ତାକ୍ଷରରୁ ଜାଣିପାରିଲି ଯେ ସେସବୁ ମୃଣାଳିନୀର କାମ ।'

ରୋହତ୍‌ଗୀଙ୍କର ପଥର ମୂର୍ତ୍ତିଟି ଟିକିଏ ହସିଉଠିଲା, ଚୁରୁଟ୍‌ରୁ ଆଉ ଟାଣେ ଟାଣିଲା । 'କ୍ଲାସ୍‌ରେ ସାଙ୍ଗସାଥୀଙ୍କ ସହିତ ଥଟ୍ଟାତାମସା-ମାଙ୍କଡ଼ାମୀ କରୁକରୁ କୋଟର ବୋତାମ୍‌ଗୁଡ଼ିକ ଛିଣ୍ଡିପଡ଼ିଛି, ଲଜ୍ଜାରେ କାହାକୁ କହିନଥିଲି । ରାତିରେ ଶୋଇବା ପରେ ମୃଣାଳିନୀ ପାଦ ଚିପି ଚିପି କୋଠରୀରେ ପଶି, ୱାର୍ଡ୍ରୋବ୍‌ରୁ କୋଟ୍‌ଟି ବାହାର କରିନେଇ ବୋତାମ ଲଗେଇ ଦେଇ ପୁଣି ପାଦ ଚିପି ଚିପି କୋଠରୀରୁ ବାହାରିଯାଇଛି ।'

ପରଦିନ ସକାଳେ ବ୍ରେକ୍‌ଫାଷ୍ଟ ଟେବୁଲ୍‌ରେ ବେଶ୍ ଗମ୍ଭୀର ଭାବରେ ମୃଣାଳିନୀ କହିଲା- 'ଜାଣିଚ ନା ମା, ଅତି ଛୁଆଟେ ପରି ରତନ୍ କାଲି କ୍ଲାସ୍‌ରେ ପିଲାଙ୍କ ସାଥିରେ ମରାମରି ଛଡ଼ାଛଡ଼ି କରି କୋଟ୍‌ର ବୋତାମଗୁଡ଼ାକ ଛିଣ୍ଡେଇ ଆସିଛି ।'

ମା କିଛି କହିବା ଆଗରୁ ରତନ କୁହେ, 'ତୁମେ କହିଲ ମା, ମୋ ଭଳି ପିଲା କଣ କେବେ ଏମିତି କାମ କରିପାରେ ?'

ରତନର କପ୍‌ରେ କଫି ଢାଳୁ ଢାଳୁ ମା' କହନ୍ତି- 'ହଁ ତା'ତ ନିଶ୍ଚୟ । ରତନ କାହିଁକି ମରାମରି ଛଡ଼ାଛଡ଼ି କରନ୍ତା !'

ଅଭିମାନଭରା କଣ୍ଠରେ ମୃଣାଳିନୀ କୁହେଁ, 'ତୁମେ ଆଜିକାଲି ଖୁବ୍ ପାର୍ଶିଆଲ୍ ହେଇଗଲଣି ମା ।'

କଫି କପ୍‌ରେ ମୁହଁ ଲଗାଇବା ହୁଏନା - ରତନ ଓ ମୃଣାଳିନୀ ଭିତରେ ଆରମ୍ଭ ହେଇଯାଏ ଲଢ଼େଇ । ମା'ଙ୍କର ଶାସନକୁ ଉପେକ୍ଷା କରି ପରସ୍ପର ମରାମରି କରିବାକୁ ଚଢି ଉଠନ୍ତି । ଯାରି ଭିତରେ ରତନ ଦୌଡ଼ିଯାଇ କୋଟ୍‌ଟି ଆଣି ମା'ଙ୍କୁ ଦେଖେଇଦିଏ ।—'ଦେଖ ତ ମା, କୋଉଠି ବୋତାମ୍ ଛିଣ୍ଡିଛି ।'

ମୁହୂର୍ତ୍ତକରେ ଚୁପ୍ ହେଇଯାଏ ମୃଣାଳିନୀ । କେବଳ ମା'ଙ୍କ ଆଖିକୁ ଫାଙ୍କି ରତନକୁ ଚାପୁଡ଼ା ଉଞ୍ଚେଇ ମୃଣାଳିନୀ କୁହେ— 'ରହ ଦେଖୁଚି ତତେ ।'

ରତନ୍ ଚିତ୍କାର କରିଉଠେ, 'ଦେଖିଲ ମା' ମୃଣାଳିନୀ କେମିତି ମାରିବ କହୁଛି ।'

ରୋହତ୍‌ଗୀ ସାହେବ ଚୁରୁଟ୍‌ରୁ ଦମେ ଟାଣି କଫିରେ ଚୁମକ ଦେଲେ । — 'ଜାଣିଚ ବାଲୁ, ମୃଣାଳିନୀ ମୋର ସାରା ଜୀବନଟାକୁ ଏମିତି ପ୍ରଭାବାନ୍ୱିତ କରିଦେଲା ଯେ ତାକୁ ଛାଡ଼ି ମୋର ଜୀବନର ପରିଧି କଳ୍ପନା କରିବା କଷ୍ଟକର ଥିଲା । ମୃଣାଳିନୀର ପ୍ରେମରେ ପଡ଼ିଥିଲି କି ନାହିଁ ଜାଣିନି, ତେବେ ଜାଣିଛି ସେ ମୋତେ ଖୁବ୍ ଭଲ ପାଉଥିଲା ଏବଂ ତାକୁ ପାଖରେ ନପାଇଲେ ସତେ ଯେମିତି ମୋତେ ଅନ୍ଧାର ଦିଶୁଥିଲା ।'

ଚୁରୁଟ୍‌ର ଲମ୍ବାମୋଟା ପାଉଁଶଟିକେ ତଳେ ପଡ଼ିଗଲା । ସତେକି ଏକ ଚୋରା ଦୀର୍ଘ ନିଃଶ୍ୱାସ ଛାଡ଼ିଲେ ମିଃ ରୋହତ୍‌ଗୀ ।

...ଲଣ୍ଡନ୍ ସ୍କୁଲ୍ ଅଫ୍ ଇକନମିକ୍ସ ଏବଂ ଲିନ୍‌କଲ୍ ସ୍ଇନ୍‌ରୁ ପଢ଼ା ଶେଷ ହେବା ପରେ ରତନ ରୋହତ୍‌ଗୀଙ୍କ ସାଙ୍ଗେ ମୃଣାଳିନୀ ବର୍ମାଙ୍କ ବିବାହ ହେଲା । ସେଇ ରାତିରେ ଡାଃ ବର୍ମାଙ୍କ କେନ୍‌ସିଂଟନ୍ ଫ୍ଲାଟ୍‌ଟି ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ଉପସ୍ଥିତିରେ ଭରିଉଠିଥିଲା । ବ୍ରିଟିଶ୍ ପାର୍ଲାମେଣ୍ଟର ଅନେକ ମେୟର୍ ଓ କେତେ ହଜାର ଭାରତୀୟଙ୍କୁ ଛାଡ଼ି ସେକ୍ରେଟାରୀ ଅଫ୍ ଷ୍ଟେଟ୍ ଅଫ୍ ଇଣ୍ଡିଆ ବି ଆସିଥିଲେ ରତନ ରୋହତ୍‌ଗୀ ଓ ମୃଣାଳିନୀଙ୍କୁ ଶୁଭେଚ୍ଛା ଜଣାଇବାକୁ । ପ୍ରଥମ ମିଳନର ରାତ୍ରୀରେ ମୃଣାଳିନୀ ରତନ ରୋହତ୍‌ଗୀଙ୍କୁ ପ୍ରଣାମ କରିଥିଲେ— କେବଳ ଆଶୀର୍ବାଦ କର, ଯେମିତି ତୁମକୁ ପ୍ରାଣଭରି ପାଇପାରିବି ।

ଲଣ୍ଡନ ପ୍ରବାସୀ ବିତ୍ତ ତଥା ପ୍ରଭାବଶାଳୀ ଡାକ୍ତରଙ୍କ କନ୍ୟାଙ୍କୁ ଏପରି ଭାବରେ ପ୍ରଣାମ କରିବା ଦେଖି ମିଃ ରୋହ୍‌ତ୍‌ଗୀ ବିସ୍ମିତ ହୋଇଯାଇଥିଲେ । ସେ କିଛି ଉତ୍ତର ଦେବା ପୂର୍ବରୁ ମୃଣାଳିନୀ ପୁଣି କହିଥିଲେ, 'ଦେଖ ରତନ, ମୋତେ କେବଳ ଭଲ ପାଇଲେ ମୋ ମନ ଭରିବ ନାହିଁ କି ମୁଁ ସନ୍ତୁଷ୍ଟ ହେବିନାହିଁ । ତୁମେ ମୋର ଭୁଲ୍ ତ୍ରୁଟିକୁ ଦେଖେଇଦବ, ମୋତେ ଶାସନ କରିବ, ତେବେ ଯାଇ ମୁଁ ସୁଖୀ ହେବି ।'

ଆନନ୍ଦ ଓ ସୁଖରେ ରତନ ରୋହ୍‌ତ୍‌ଗୀର ମନର କୋଣ ଅନୁକୋଣ ଭରିଯାଇଥିଲା । ମୁଗ୍ଧ ନୟନରେ ଏବଂ ଭରପୂର ପ୍ରାଣରେ ସେଇ ରାତିରେ ରତନ ରୋହତଗୀ ଜୀବନ ସଙ୍ଗିନୀକୁ ଦେଖିଥିଲେ ଏବଂ ତାଙ୍କର ଦୀର୍ଘଦିନର ସଞ୍ଚିତ ପ୍ରେମକୁ ନେଇ ନିଜର ଅନ୍ତର ପୂର୍ଣ୍ଣ କରିଥିଲେ ।

...'ଜାଣିଚ ବାଛୁ, ରୂପକଥାର କାହାଣୀ ପରିକା ମୃଣାଳିନୀର ସ୍ପର୍ଶରେ ମୋ ଜୀବନରେ ସାଫଲ୍ୟର ବନ୍ୟା ଆସିଲା । ନାଇଣ୍ଟିନ୍ ଟ୍ୱେଣ୍ଟିଫାଇଭରୁ ଥାର୍ଟିଫୋର୍ ଭିତରେ କେତେ ଲକ୍ଷ ଟଙ୍କା ରୋଜଗାର କରିଛି, ସେକଥା ଆଜି ଆଉ ମନେପଡୁନି । କେବଳ ମନେଅଛି, ହାଇକୋର୍ଟରେ ପ୍ରାକ୍‌ଟିସ୍ ଆରମ୍ଭ କରିବାର ବର୍ଷେ ଭିତରେ ଘର କିଣିଲି । ଦୁଇବର୍ଷ ପରେ ଏପରି ଅବସ୍ଥା ଆସି ପହଞ୍ଚିଲା ଯେ କେସ୍ ଫେରେଇ ଦେବା ସକାଶେ ଆଟର୍ଣ୍ଣିମାନଙ୍କ ସହିତ ଝଗଡ଼ା କରିବାକୁ ପଡ଼ିଲା । ତାପରେ ନାଇଣ୍ଟିନ୍ ଟ୍ୱେଣ୍ଟିନାଇନ୍‌ରେ ଅଳକାପୁରୀର ପ୍ରିନ୍‌ସେସ୍ ଅମିତା ସିଂଙ୍କର ମର୍ଡ଼ର ହୁଏ ଏବଂ ମହାରାଜାଙ୍କ ଏ.ଡି.ସି. କର୍ଣ୍ଣେଲ୍ ଭୌଁସ୍‌ଲେଙ୍କୁ ହତ୍ୟାକାରୀ ରୂପେ ସେସନ୍‌ସ କୋର୍ଟ ମୃତ୍ୟୁଦଣ୍ଡାଦେଶ ଦିଅନ୍ତି । କର୍ଣ୍ଣେଲ୍ ଭୌଁସ୍‌ଲେ ହାଇକୋର୍ଟରେ ଅପିଲ୍ କରିବାକୁ ଅନୁମତି ପାଆନ୍ତି । ସାର୍ ହରିନାଥ ପାଟିଲ୍‌ଙ୍କ ପରାମର୍ଶ କ୍ରମେ ଭୌଁସ୍‌ଲେ ମୋ ପାଖରେ ଆସି ହାଜର୍ ହୁଅନ୍ତି । କିନ୍ତୁ ହାତରେ ବହୁତଗୁଡ଼ିଏ କେସ୍ ଥିବାରୁ ମୋର ଅକ୍ଷମତା ଜଣାଇ ତାଙ୍କୁ ବିଦାୟ ଦେଲି ।'

ମିଃ ରୋହ୍‌ତ୍‌ଗୀ ଟିକିଏ କଡ଼ ବଦଳେଇ ବସିଲେ । ଆଉ ଗୋଟିଏ ନୂଆ ଚୁରୁଟ୍‌ରେ ନିଆଁ ଧରେଇଲେ ଏବଂ ତେରଛା ନଜରରେ ବିରାଟ ଫ୍ରେମ୍‌ରେ ବନ୍ଧା ହୋଇଥିବା ସ୍ତ୍ରୀଙ୍କ ଫଟୋ ଆଡ଼କୁ ଥରେ ଚାହିଁଲେ ।

ମିଃ ରୋହ୍‌ତ୍‌ଗୀଙ୍କ ନିକଟରୁ ନିରାଶ ହୋଇ ମିସେସ୍ ଭୌଁସ୍‌ଲେ ପରଦିନ ମିସେସ୍ ରୋହତଗୀଙ୍କ ନିକଟରେ ହାଜର୍ ହେଲେ ।

'ଆପଣଙ୍କ ପରି ମୁଁ ବି ମୋ ସ୍ୱାମୀଙ୍କୁ ଭଲ ପାଏ, ତାଙ୍କୁ ନେଇ ସ୍ୱପ୍ନ ଦେଖେ କହିପାରିବେ ସେଇ ସ୍ୱାମୀଙ୍କ ଫାଶୀ ହେବା ପରେ ମୁଁ କିପରି ବଞ୍ଚିବି ?'

ଉତ୍ତେଜିତ ହୋଇଯାଇଥିଲେ ମିସେସ୍ ଭୌଁସ୍‌ଲେ । ସୁସ୍ଥ ଭାବରେ ଚିନ୍ତା କରିବାର ମାନସିକ ଅବସ୍ଥା ନଥିଲା ତାଙ୍କର । ତେଣୁ କହିପକେଇଲେ, 'ମୋ ବଦଳରେ ଆପଣଙ୍କର ଯଦି ଏପରି ବିପଦ ଉପୁଜେ, ତେବେ'—

ମିସେସ୍ ରୋହତ୍‌ଗୀ ଆଉ ତାଙ୍କୁ କହିବାକୁ ଦେଲେ ନାହିଁ । ମିସେସ୍ ଭୋଁସ୍‌ଲେଙ୍କ ପାଟିରେ ହାତ ଚାପି ରଖି ପ୍ରତିଶ୍ରୁତି ଦେଇଥିଲେ, ଆଶ୍ୱାସନା ଦେଇଥିଲେ ସ୍ୱାମୀଙ୍କ ସାହାଯ୍ୟର ।

ସ୍ତ୍ରୀଙ୍କ ଅନୁରୋଧରେ ମିଃ ରୋହତ୍‌ଗୀ କେସ୍‌ଟି ହାତକୁ ନେଇଥିଲେ, କିନ୍ତୁ ବହୁତ ଷଡି କଲା ପରେ ଦେଖିଥିଲେ ଯେ ବଞ୍ଚେଇବା ପ୍ରାୟ ଅସମ୍ଭବ । ଖୋଜଖବର ନେଇଥିଲେ । ବମ୍ବେର ପ୍ରାୟ ଭଲ ଭଲ ବ୍ୟାରିଷ୍ଟର୍‌ଙ୍କ ନିକଟକୁ ମିସେସ୍ ଭୋଁସ୍‌ଲେ ଯାଇଥିଲେ, କିନ୍ତୁ ସେମାନେ କହି କେସ୍‌ଟିକୁ ନେବାକୁ ସାହସ କରିନଥିଲେ ।

ପେଣ୍ଡିଂ କେସ୍‌ଗୁଡ଼ିକୁ ଜୁନିୟରମାନଙ୍କ ଜିମାରେ ଛାଡ଼ିଦେଇ ମିଃ ରୋହତ୍‌ଗୀ ଦିନରାତି କେବଳ ଭୋଁସ୍‌ଲେଙ୍କ କେସ୍‌ଟିକୁ ଧରି ବସିଲେ । କେଶ୍‌ଟା ଆଦୌ ସହଜ ନଥିଲା । ରାଜକୁମାରୀଙ୍କ ସାଙ୍ଗରେ କର୍ଣ୍ଣେଲଙ୍କ ଦୀର୍ଘଦିନର ପ୍ରେମର କାହାଣୀ ଅଳକାପୁରୀ ଷ୍ଟେଟ୍‌ର ସମସ୍ତେ ଜାଣନ୍ତି । ଏକଥା ବି ସମସ୍ତେ ଜାଣନ୍ତି ଯେ କେଉଁ ବିଶେଷ କାରଣ ଯୋଗୁଁ ରାଜକୁମାରୀ କର୍ଣ୍ଣେଲଙ୍କୁ ବାହାହବାକୁ ରାଜି ହୋଇନଥିଲେ । ଏହାର କିଛିଦିନ ଭିତରେ ଦେଓ୍ୱାନଜୀଙ୍କର ବିଲାତ ଫେରନ୍ତା ଡାକ୍ତର ପୁତ୍ରଙ୍କ ସହିତ ରାଜକୁମାରୀଙ୍କୁ ଏଠିସେଠି ଦେଖିବାକୁ ମିଳିଥିଲା । କର୍ଣ୍ଣେଲ୍ ଭୁଲିଯିବାକୁ ଚାହୁଁଥିଲେ ରାଜକୁମାରୀଙ୍କୁ ଏବଂ ସେଥିପାଇଁ ସେ ଚଟାପଟ୍ ବାହାହୋଇପଡ଼ି ନିଶ୍ଚିନ୍ତରେ ସଂସାର କରିବା ଆରମ୍ଭ କରିଥିଲେ । ବିବାହିତ କର୍ଣ୍ଣେଲଙ୍କୁ ସହ୍ୟ କରିପାରିଲେ ନାହିଁ ରାଜକୁମାରୀ ଅମିତା ସିଂ । ରାଜପ୍ରାସାଦର ପ୍ରତିଟି ଉତ୍ସବ ଅନୁଷ୍ଠାନରେ, ଦରବାରରେ ନାନା ଆସରରେ କର୍ଣ୍ଣେଲଙ୍କୁ ଅପମାନିତ ଓ ଅପଦସ୍ତ କରିବାକୁ ଆରମ୍ଭ କରିଦେଲେ ରାଜକୁମାରୀ । ମହାରାଜା ବିକ୍ରମ ସିଂ ରାଜକୁମାରୀର ଏସବୁ କାର୍ଯ୍ୟକଳାପକୁ ଠିକ୍ ଭାବେ ପସନ୍ଦ କରୁନଥିଲେ ମଧ୍ୟ ଏକମାତ୍ର ସନ୍ତାନକୁ ଶାସନ କରିବାର କ୍ଷମତା ତାଙ୍କର ନଥିଲା ।

ଏପାଖରେ ଦେଓ୍ୱାନ୍‌ଜୀଙ୍କ ପୁତ୍ର ବିଲାତରେ ଥିବା ସମୟରେ ଯେଉଁ ଇଂରେଜ ନନ୍ଦିନୀର ପାଣିଗ୍ରହଣ କରିଥିଲେ ସେ ପଳାତକ ସ୍ୱାମୀକୁ ଖୋଜି ଖୋଜି ଅକସ୍ମାତ୍ ଦିନେ ଅଳକା ପୁରୀରେ ଆସି ହାଜର୍ ହେଲେ । ଆସନ୍ନ ବିପଦର ମୁହାଁମୁହିଁ ହେବାକୁ ଡରିଯାଇଥିଲେ ଡାକ୍ତର । ସଦ୍ୟ ବିଦେଶିନୀକୁ ନେଇ ସେ ସେଇଦିନ ହିଁ ଦେଶତ୍ୟାଗ କରିଥିଲେ ।

ଇତିମଧ୍ୟରେ ଡାକ୍ତର ସାଙ୍ଗରେ ଆନନ୍ଦ ଯଜ୍ଞରେ ମାତି ରାଜକୁମାରୀ ଯେଉଁ ସନ୍ତାନଟିର ମା' ହବାକୁ ଯାଉଥିଲେ, ସେକଥା ବିଶେଷ କେହି ଜାଣିନଥିଲେ । ମହାରାଜା ବିକ୍ରମ ସିଂ ଏଇ ଦୁଃସମ୍ବାଦ ଶୁଣିଥିଲେ ଦେଓ୍ୱାନଜୀଙ୍କଠାରୁ । ଦେଓ୍ୱାନଜୀ ଜଣେଇଥିଲେ, କର୍ଣ୍ଣେଲ୍ ଏଇ ପବିତ୍ର ରାଜବଂଶର ଐତିହ୍ୟକୁ ନଷ୍ଟ କରିଦେଇଛନ୍ତି, ରାଜକୁମାରୀଙ୍କ ଦେହକୁ କଳୁଷିତ କରିଛନ୍ତି । ଦେଓ୍ୱାନଜୀଙ୍କ ପରାମର୍ଶକ୍ରମେ ଏବଂ ପ୍ରତିହିଂସାର ଜ୍ୱାଳାରେ ରାଜକୁମାରୀ ମଧ୍ୟ ଏହି ଅଭିଯୋଗର ସତ୍ୟତାକୁ ସ୍ୱୀକାର କରିଥିଲେ ମହାରାଜାଙ୍କ ସମ୍ମୁଖରେ ।

ପରଦିନ ସକାଳେ ରାଜଦରବାରରେ ମହାରାଜା, ଦେଓ୍ୱାନଜୀ ଓ ଅନ୍ୟାନ୍ୟ ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ସମ୍ମୁଖରେ ରାଜକୁମାରୀ କର୍ଣ୍ଣେଲଙ୍କୁ ଅଭିଯୁକ୍ତ କରିଥିଲେ । କର୍ଣ୍ଣେଲ୍ ସ୍ତମ୍ଭିତ ହୋଇଯାଇଥିଲେ ଅତୀତର ପ୍ରେୟସୀଙ୍କର ଏଭଳି ଆକସ୍ମିକ ଆକ୍ରମଣ ଯୋଗୁଁ । ପ୍ରତିଆକ୍ରମଣ ତ ଦୂରର କଥା, ବାକ୍‌ଶକ୍ତି ବି ହରେଇବସିଥିଲେ ଏଇ ବୀର ମରାଠୀ ଯୋଦ୍ଧା । ମୁଣ୍ଡ ତଳକୁ ପୋତି ଦରବାର ତ୍ୟାଗ କରିଥିଲେ ସେ; କିନ୍ତୁ ଘରକୁ ଫେରି ପାରିନଥିଲେ ଏଇ ମିଥ୍ୟା କଳଙ୍କର ବୋଝକୁ ବୋହି ।

ସେଇଦିନ ରାତିରେ ହିଁ ରାଜପ୍ରାସାଦର ଶାନ୍ତି ବିଘ୍ନିତ କରି ଗର୍ଜି ଉଠିଥିଲା ରିଭଲଭର । ରାଜକୁମାରୀଙ୍କ ନିଷ୍ପ୍ରାଣ ଦେହଟା ମିଳିଥିଲା, କିନ୍ତୁ ମିଳିନଥିଲା ଆତତାୟୀର ସଂଧାନ । ବୁଦ୍ଧିମାନ ପ୍ରବୀଣ କ୍ରୁଦ୍ଧ ଦେଓ୍ୱାନଜୀ ରାଜକୁମାରୀଙ୍କ ହତ୍ୟା ଅଭିଯୋଗରେ କର୍ଣ୍ଣେଲଙ୍କ ବିରୁଦ୍ଧରେ ମାମଲା ଦାଏର୍ କଲେ ଏବଂ ଅବଶେଷରେ ସେସନ୍ସ କୋର୍ଟରେ କର୍ଣ୍ଣେଲ୍‌ଙ୍କୁ ମୃତ୍ୟୁଦଣ୍ଡାଦେଶ ଦିଆହେଲା ।

ଦୀର୍ଘ ମାସେକାଳ ଆହାର ନିଦ୍ରା ତ୍ୟାଗ କରିଥିଲେ ମିଃ ରୋହତ୍‌ଗୀ । ରାତିର ଶେଷ ପ୍ରହର ଆଡ଼କୁ ଲାଇବ୍ରେରୀର ଇଜି ଚେୟାର୍‌ରେ ମୋଟା ମୋଟା ଆଇନ୍ ବହି ଛାତିରେ ଧରି ଶୋଇପଡ଼ନ୍ତି ପଛେ ବିଛଣାକୁ ଯିବା ହୁଏନା । ଚିଫ୍ ଜଷ୍ଟିସ୍ ଉଇଲସନ୍, ଜଷ୍ଟିସ୍ ନୋୟେଲ୍ ଏବଂ ଜଷ୍ଟିସ୍ ବେକର୍‌ଙ୍କ କୋର୍ଟରେ ଯେଉଁଦିନ ଏଇ ଅପିଲ୍‌ର ଶୁଣାଣି ଆରମ୍ଭ ହେଲା, ସେଦିନ ରୋହତଗୀଙ୍କ ଚେହେରା ଦେଖି ଚମକି ପଡ଼ିଥିଲେ ବାର୍‌ର ଅନେକ ବନ୍ଧୁ । ଖବରକାଗଜଗୁଡ଼ିକର ରିପୋର୍ଟର ଏବଂ ବାର୍‌ର ଅନ୍ୟାନ୍ୟ ବାରିଷ୍ଟର୍‌ମାନେ ବି ଚିଫ୍ ଜଷ୍ଟିସ୍‌ଙ୍କ କୋର୍ଟରୁମ୍‌ରେ ଭର୍ତ୍ତି ହେଇଯାଇଥିଲେ । ଆଟର୍ଣ୍ଣି-ଆଡ଼ଭୋକେଟ୍‌ମାନେ ବି କୋର୍ଟ ରୁମ୍‌କୁ ପଶିପାରିନଥିଲେ । ସାତଦିନ ଭିତରୁ ଚାରିଦିନ କାଳ ଧରି ପ୍ରଶ୍ନ କରୁଥିଲେ ମିଃ ରୋହତ୍‌ଗୀ । ପ୍ରଶ୍ନ ଶେଷ ହେବା ପରେ ଚିଫ୍ ଜଷ୍ଟିସ୍ ମନ୍ତବ୍ୟ ଦେଇଥିଲେ, 'ଆଇ ମଷ୍ଟ ପୁଟ୍ ଇଟ୍ ଅନ୍ ରେକର୍ଡ଼ ଆଓ୍ୱାର୍ ସିନ୍‌ସିଅର୍ ଆପ୍ରିସିଏସନ୍ ଫର୍ ୟୋର୍ ଓ୍ୱାଣ୍ଡର୍‌ଫୁଲ୍ ପରଫର୍ମେନ୍ସ ।'

ମିଃ ରୋହତ୍‌ଗୀ ମୁଣ୍ଡ ତଳକୁ କରି କେବଳ କହିଥିଲେ, 'ମେନି ଥ୍ୟାଙ୍କ୍‌ସ ମିଃ ଲର୍ଡ଼; ମକଦ୍ଦମାରେ ହାରିଗଲେ ମଧ୍ୟ ମୋର ଆଉ ଦୁଃଖ ରହିବ ନାହିଁ ।'

କୋର୍ଟ ରୁମ୍‌ରୁ ବାହାରିଆସିଲା ପରେ ମୃଣାଳିନୀ କହିଥିଲେ, 'ରତନ୍, ସତରେ ତୁମେ କ'ଣ ?'

ମିଃ ରୋହତ୍‌ଗୀ ସେତେବେଳେ କିଛି ଉତ୍ତର ଦେଉନଥିଲେ । ଉତ୍ତର ଦେଉଥିଲେ ଗାଡ଼ିରେ ଘରକୁ ଫେରିଗଲା ସମୟରେ - 'ଦେଖ ମୃଣାଳିନୀ, ତୁମ କଥାରେ, ତୁମ ମୁହଁକୁ ଅନେଇ ମୁଁ ଏହାଠାରୁ ବଳି ଆହୁରି ବହୁତ ବହୁତ କଠିନ କାମ କରିଦେଇ ପାରିବି । ଯଦି ହନୁମାନ ଭଳି ଚାତିଚିରି ଦେଖେଇ ହେଉଥାନ୍ତା, ଦେଖେଇ ପାରନ୍ତି ଏଇ ଛାତି ଭିତରେ ତୁମର ମୂର୍ତ୍ତିକୁ ।'

ମୃଣାଳିନୀ ଆଉ କଥା କହିଲେ ନାହିଁ, ନୀରବରେ ସ୍ୱାମୀଙ୍କ ଛାତିରେ ମଥା ରଖିଥିଲେ ଏବଂ ଆନନ୍ଦ ଓ ତୃପ୍ତିରେ ମୁହଁ ତାଙ୍କର ଉଜ୍ଜ୍ୱଳି ଉଠିଥିଲା ।

ପରବର୍ତ୍ତୀ ସୋମବାର ଦିନ ଚିଫ୍ ଜଷ୍ଟିସ୍ ଉଇଲସନ୍ ଭରପୂର କୋର୍ଟରେ ଜଜ୍‌ମେଣ୍ଟ ପଢ଼ିବା ଆରମ୍ଭ କଲେ । ସକଳ ଇନ୍ଦ୍ରିୟ ମାଧ୍ୟମରେ ଜଜ୍‌ମେଣ୍ଟ ପଢ଼ା ଶୁଣୁଥିଲେ ମିସେସ୍ ଭୌଁସ୍‌ଲେ, କର୍ଣ୍ଣେଲ୍ ଭୌଁସ୍‌ଲେ, ଦେଓ୍ୱାନ୍‌ଜୀ ଏବଂ ଆହୁରି ଅନେକେ । ଦେଢ଼ଘଣ୍ଟା ପରେ ଚିଫ୍ ଜଷ୍ଟିସ୍ କହିଲେ, 'ଆମେ ତିନିଜଣଯାକ ସଂପୂର୍ଣ୍ଣ ଏକମତ ଯେ କର୍ଣ୍ଣେଲ୍ ଭୌଁସ୍‌ଲେ ଦୋଷୀ ନୁହନ୍ତି, ଦେଓ୍ୱାନ୍‌ଜୀଙ୍କ ଚକ୍ରାନ୍ତ ଓ ପୋଲିସ୍‌ର ସହାୟତାରେ ତାଙ୍କୁ ଖୁନୀ କରାଯାଇଛି !'

ମିସେସ୍ ଭୌଁସ୍‌ଲେ ଛୁଟିଆସି ମିଃ ରୋହତ୍‌ଗୀଙ୍କ ପାଦ ତଳେ ପଡ଼ିଗଲେ । ମୁକ୍ତ ହେବା ପରେ କର୍ଣ୍ଣେଲ୍ ବି ଆସିଥିଲେ ପଚିଶ ହଜାର ଟଙ୍କା ଚେକ୍ ଧରି । ମିଃ ରୋହତ୍‌ଗୀ ସେଇ ଚେକ୍ ନେଇନଥିଲେ, ଫେରେଇ ଦେଇଥିଲେ । କହିଥିଲେ, 'ଫିଜ୍ ପାଇବା ଲୋଭରେ ଏଇ କେଶ୍‌କୁ ନେଇନଥିଲି, ନେଇଥିଲି ମୋ ସ୍ତ୍ରୀଙ୍କ କଥାରେ ।' ଟିକିଏ ରହିଯାଇ ପୁଣି କହିଥିଲେ, 'କର୍ଣ୍ଣେଲ୍, ମୁଁ ନିଶ୍ଚୟ ଆଶା କରିବି ଭବିଷ୍ୟତରେ ଆପଣ ଆପଣଙ୍କର ସ୍ତ୍ରୀଙ୍କ କଥାର ମର୍ଯ୍ୟାଦା ରଖିବେ ଏବଂ ଏଇ ପ୍ରତିଶ୍ରୁତି ଛଡ଼ା ମୋର ଅନ୍ୟ କୌଣସି ପାଉଣା ନାହିଁ ଆପଣଙ୍କଠାରେ ।'

କିଛିଦିନ ପରେ ଦିନେ ସଂଧ୍ୟାରେ କୋଲାବ୍‌ର ରୋହତ୍‌ଗୀ ଗୃହରେ ମହାରାଜା ବିକ୍ରମ ସିଂହ ସ୍ୱୟଂ ଆସି ହାଜର୍ ହେଇଥିଲେ । କହିଥିଲେ, 'ବାରିଷ୍ଟର୍ ସାହେବ, ସବୁ ମହାରାଜାମାନଙ୍କ ଭଳି ମୁଁ ବି ଦେଓ୍ୱାନଜୀଙ୍କ କଥାରେ ଉଠ୍ ବସ୍ ହେଇଛି, କିନ୍ତୁ ଆଉ ନୁହେଁ । କର୍ଣ୍ଣେଲ୍‌ଙ୍କୁ ମୁକ୍ତି ଦେଇଥିବାରୁ ମୁଁ ଆପଣଙ୍କ ନିକଟରେ ଚିରକୃତଜ୍ଞ ।'

ଏହାପରେ ମହାରାଜାଙ୍କର ବହୁତ ବାଧ୍ୟବାଧକତାରେ ମିଃ ରୋହତ୍‌ଗୀ ବାଧ୍ୟ ହୋଇ ପାଞ୍ଚଲକ୍ଷ ଟଙ୍କା ନେଇଥିଲେ ।

ପରବର୍ତ୍ତୀ ଚୁରୁଟ୍‌ଟା ବି ଶେଷ ହୋଇ ଆସୁଥିଲା । ମିଃ ରୋହତ୍‌ଗୀ ଚୁରୁଟ୍‌ର ଟୁକୁରାଟିକୁ ଫିଙ୍ଗିଦେଲେ ଆସ୍‌ଟ୍ରେରେ । କହିଲେ, 'ବିଶ୍ୱାସ କର ଜର୍ଣ୍ଣାଲିଷ୍ଟ, ତାପରଠାରୁ ମୋର ଯଶ ପ୍ରତିପତ୍ତି ଓ ରୋଜଗାର ହୁ ହୁ ହେଇ ବଢ଼ିଚାଲିଲା । ଏତେ କେଶ୍ ପାଇବାକୁ ଲାଗିଲି ଯେ ଆଠ ଦଶ ଜଣ ଜୁନିୟର୍ ନୟାନ୍ତ ହେଉଥିଲେ । ଖ୍ରୀଷ୍ଟମାସ ଛୁଟିରେ ପ୍ରାୟ ଦଶଦିନ ପାଇଁ ମୃଣାଳିନୀକୁ ନେଇ କୋଉଠିକି ନା କୋଉଠିକି ଚାଲିଯାଏଁ । ଏହାଛଡ଼ା ଦିନକ ପାଇଁ ହେଲେବି ବମ୍ବେର ବାହାରକୁ ଯାଇପାରୁ ନଥିଲି- ଦିନକ ପାଇଁ ବି ଛୁଟି ନେଉନଥିଲି ।'

ମେମ୍ ସାହେବ୍, ହଠାତ୍ ଦିନେ ମିଃ ରୋହତ୍‌ଗୀ ଦେଖିଲେ ଯେ ଗୁଡ଼ାଏ ଟଙ୍କା ଜମା ହେଇଯାଇଛି । ସେଇଦିନ ହିଁ ପ୍ରାକ୍‌ଟିସ୍ ଛାଡ଼ିଦେଲେ । ଅଦୃଷ୍ଟର ଯୋଗାଯୋଗରେ ପଲିଟିକ୍ସରେ ଜଏନ୍ କଲେ ।

ଏହାପରେ ପ୍ରଖ୍ୟାତ ଜନନେତା ରତନ ରୋହତ୍‌ଗୀ ଧୀରେ ଧୀରେ ଆଗେଇ ଚାଲିଛନ୍ତି ରାଜନୈତିକ ଜୀବନର ଶୀର୍ଷସ୍ଥାନଟି ଆଡ଼କୁ ଏବଂ ଆଜି ସେ ହେଉଛନ୍ତି ଭାରତବର୍ଷର ଅନ୍ୟତମ ଅପ୍ରତିଦ୍ୱନ୍ଦ୍ୱୀ ଜନନାୟକ । ରୋହତ୍‌ଗୀଙ୍କ ରାଜନୈତିକ ଜୀବନର ଏଇ ସାଫଲ୍ୟର ଇତିହାସ ଭାରତବର୍ଷର ଶତଶତ ସମ୍ବାଦପତ୍ରର ପୃଷ୍ଠାରେ ପୃଷ୍ଠାରେ ଅନେକଥର ଛପା ହେଇଛି । ଲୋକଙ୍କ ମୁହେଁ ମୁହେଁ ଏ´କାହାଣୀ ବିସ୍ତାରିତ ହୋଇଯାଇଛି ଗ୍ରାମରୁ ଗ୍ରାମାନ୍ତର । କିନ୍ତୁ ତାଙ୍କର ଏକାନ୍ତ ନିଜସ୍ୱ ବ୍ୟକ୍ତିଗତ ଜୀବନର ଯେଉଁ ବ୍ୟର୍ଥତାର ଇତିହାସ ଯେଉଁ ଅଶ୍ରୁଳ କାହାଣୀ କେହି ଜାଣନ୍ତି ନାହିଁ, ସେଇ କାହାଣୀକୁ ହିଁ ସେ ସେଇ ରାତିରେ ଶୁଣେଇଥିଲେ ମୋତେ !

ରତନ ରୋହତ୍‌ଗୀଙ୍କ ରାଜନୈତିକ ଜୀବନର କେନ୍ଦ୍ରସ୍ଥଳୀ ବମ୍ବେରୁ ଦିଲ୍ଲୀକୁ ପରିବର୍ତ୍ତିତ ହେବାର କେତୋଟି ବର୍ଷ ମଧ୍ୟରେ ତାଙ୍କର ଏକମାତ୍ର ପୁତ୍ର ଅକ୍ସଫୋର୍ଡ଼ରୁ ଗ୍ରାଜୁଏଟ୍ ହେଇ ଦେଶକୁ ଫେରିଲେ । ଦୁଇବର୍ଷ ଭିତରେ ସେଇପୁତ୍ର ବଡ଼ ଚାକିରିରେ ଭର୍ତ୍ତି ହେଲେ । ମିଃ ବା ମିସେସ୍ ରୋହତ୍‌ଗୀ ଜାଣିନଥିଲେ ତାଙ୍କର ଏକମାତ୍ର ପୁତ୍ର ଇତିମଧ୍ୟରେ ଜଣେ ନିକଟଆତ୍ମୀୟା ସୁନ୍ଦରୀଙ୍କୁ ହୃଦୟ ଦାନ କରିଦେଇଛନ୍ତି । ଏଇ ବାହାଘରର ପ୍ରସ୍ତାବ ଆସିବାମାତ୍ରେ ମିଃ ରୋହତ୍‌ଗୀ ଚମକି ପଡ଼ିଲେ, ମୃଣାଳିନୀ ରୋହତ୍‌ଗୀ ମଧ୍ୟ ଏଥିରେ ସହମତ ହୋଇପାରିନଥିଲେ । ପୁତ୍ରର ମୁହଁ ଚାହିଁ ମିସେସ୍ ରୋହତଗୀ କିଛିଦିନ ପରେ ନିଜର ମତ ପରିବର୍ତ୍ତନ କରିଥିଲେ ଏବଂ ସ୍ୱାମୀଙ୍କ ନିକଟରେ ସୁପାରିଶ କରିଥିଲେ । ମାତ୍ର ଫଳ କିଛିହେଲା ନାହିଁ । ବଜ୍ର କଠୋର ଚିତ୍ତରେ ମିଃ ରୋହତଗୀ ପୁତ୍ରର ଆବେଦନ, ସ୍ତ୍ରୀଙ୍କ ଅନୁରୋଧକୁ ଉପେକ୍ଷା କରିଥିଲେ । କହିଥିଲେ, 'ଏତେ ନିକଟ ଆତ୍ମୀୟାଙ୍କ ସହ ବାହା ଦେଇପାରିବି ନାହିଁ, ସମାଜ ଛି ଛାକର କରିବ ।'

ଚାହିଁ ଦେଖେ, ମିଃ ରୋହତଗୀଙ୍କ ଦୁଇ ଆଖିରୁ ଲୁହ ଗଡ଼ିପଡୁଥିଲା । ତଳ ଓଠଟିକୁ କାମୁଡ଼ି ମୃଣାଳିନୀ ଦେବୀ ଏବଂ ପୁତ୍ରର ପାଖାପାଖି ଦୁଇଟି ଅଏଲ୍ ପେଣ୍ଟିଂ ଆଡ଼କୁ ଚାହିଛନ୍ତି । ଭାରତବର୍ଷର ଏତେବଡ ଜଣେ ନେତାଙ୍କର ଏଭଳି ଅସହାୟ ଅବସ୍ଥା ଦେଖି ମୁଁ ଖୁବ୍ ଅଶ୍ୱସ୍ତିବୋଧ କଲି । କିଛି କହି ସାନ୍ତ୍ୱନା ଦେବି ବୋଲି ଭାବି ମଧ୍ୟ ତା' କରିପାରିଲି ନାହିଁ । ମୁଁ କିଛି କହିବା ପୂର୍ବରୁ ମିଃ ରୋହତ୍‌ଗୀ ନିଜକୁ ଟିକିଏ ସମ୍ଭାଳି ନେଲେ । ତେବେ ବେଶୀ କଥା କହିବା ଅବସ୍ଥାରେ ନଥିଲେ । କେବଳ କହିଲେ, ତିନିଦିନ ପରେ ପୁଅର ଡେଡ଼ବଡ଼ି ମିଳିଲା ଓଖ୍‌ଲା ବନ୍ଧର ଧାରରେ । ଯମୁନା କୂଳରେ ଓଖ୍‌ଲା ବନ୍ଧକୁ ମୁଁ ଯାଇଥିଲି । ମୃଣାଳିନୀ କିନ୍ତୁ ଗଲାନାହିଁ । ଯଙ୍ଗ ପୁତ୍ରର ମୃତ୍ୟୁରେ ବୁନ୍ଦିଏ ଲୁହ ମଧ୍ୟ ଗଡ଼େଇଲା ନାହିଁ । ମୁଁ ଖୁବ୍ ଭୟଭୀତ ହେଇପଡ଼ିଥିଲି, କିନ୍ତୁ ମୃଣାଳିନୀକୁ ସାନ୍ତ୍ୱନା ଦେବା ପାଇଁ ମୋର ଭାଷା ନଥିଲା ।'

ମିଃ ରୋହତଗୀ ପୁଣି ଅତିବେଶୀ ଉତ୍ତେଜିତ ହୋଇପଡ଼ିଲେ । ମୋର ଦୁଇ ହାତକୁ ଚାପିଧରି କହିଲେ, ଜାଣିଚ ବାଚ୍ଚୁ, ପରଦିନ ସକାଳେ ମୃଣାଳିନୀଙ୍କ ନିଷ୍ପ୍ରାଣ

ଦେହଟାକୁ ପାଇଥିଲି ତାର ବିଛଣାରେ । କୌଣସି ଚିଠିପତ୍ର ପାଇନଥିଲି, ପାଇଥିଲି ସ୍ଲିପିଙ୍ଗ୍‌ପିଲ୍‌ର ଖାଲି ଶିଶିଟାକୁ ତକିଆ ତଳୁ ।

ମୁଁ ମିଃ ରୋହତ୍‌ଗୀଙ୍କ ଅତି ପାଖକୁ ଲାଗିଯାଇ ତାଙ୍କୁ କୁଣ୍ଢେଇ ଧରିଲି, ରୁମାଲ୍ ବାହାର କରି ତାଙ୍କ ଆଖିରୁ ଲୁହ ପୋଛିଦେଲି । ମୋ ହାତଟାକୁ ଚାପି ଧରି କହିଲେ, 'ବାଛୁ, ମୋତେ କାନ୍ଦିବାକୁ ଦିଅ । ମୃତ୍ୟୁର ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ଏ ଆଖିର ଲୁହ ବୋହିବା କେବେ ବି ବନ୍ଦ ହେବ ନାହିଁ ।'

ଜାଣିଚ ମେମ୍ ସାହେବ, ମିଃ ରୋହତ୍‌ଗୀଙ୍କ ଦେହଟା କେମିତି ଅବଶ ହେଇ ସୋଫା ଉପରେ ଢଳି ପଡ଼ିଲା । ବହୁତ ବେଳଯାଏଁ କିଛି କଥା କହିଲେ ନାହିଁ । ମୁଁ ବି କିଛି କହିବାର ସାହସ ଜୁଟେଇ ପାରିଲି ନାହିଁ । ଦୁହେଁ କେତେବେଳଯାଏ ଚୁପ୍ ରହିଗଲୁ ମନେନାହିଁ । କେବଳ ମନେଅଛି ବାଷ୍ପରୁଦ୍ଧ କଣ୍ଠରେ କହିଥିଲେ, 'ବିଶ୍ୱାସ କର, ପ୍ରତି ରାତିରେ ମୃଣାଳିନୀ ମୋ ପାଖକୁ ଆସେ, ମୋ ସହିତ କଥା କୁହେ, ମୋତେ ଗେଲ କରେ, ଭଲ ପାଏ । ଦିନସାରା ଓ ସନ୍ଧ୍ୟାସାରା ମୁଁ ମନେ ମନେ କାନ୍ଦେ, ଆଉ ରାତିରେ ମୃଣାଳିନୀ ଆସେ; ମୋ ଆଖିରୁ ଲୁହ ପୋଛିଦିଏ । କହେ, ଦୁଃଖ କଣ ? ଏଇତ ମୁଁ ତମରି ପାଖେ ପାଖେ ରହିଛି ।'

ମୁଁ ଆଉ ବିଳମ୍ବ କଲିନାହିଁ । ଭିତରକୁ ଯାଇ ବେହେରାକୁ ଡାକି ଆଣି ଦୁହେଁ ମିଶି ଧରାଧରି କରି ମିଃ ରୋହତ୍‌ଗୀଙ୍କୁ ତାଙ୍କ ବେଡ୍‌ରୁମ୍‌ରେ ଶୁଆଇଦେଲୁ ।

ଆଚ୍ଛା ମେମ୍ ସାହେବ, ଭାବିପାରୁଛ ନା ସେମାନଙ୍କର ପାରସ୍ପରିକ ଅନୁରାଗର ଐକାନ୍ତିକତା ? ଭାବି ପାରୁଚ, କି ଗଭୀର ପ୍ରେମ ଥିଲା ସେ ଦୁହିଁଙ୍କ ଭିତରେ ? କଳ୍ପନା କରିପାରୁଚ ନା ଜଣକର ପ୍ରତି ଅନ୍ୟ ଜଣକର ନିର୍ଭରଶୀଳତା ? ଦୀର୍ଘଦିନ ପରେ ତୁମେ ଫେରିଆସୁଛ ମୋ ପାଖକୁ । କିଛିଦିନ ମଧ୍ୟରେ ଆମର ଦୁଇଟି ଜୀବନ ଗୋଟିଏ ଗଣ୍ଠିରେ ବନ୍ଧା ହେବ, ଏକ ସ୍ୱରରେ ବାଜିଉଠିବ ଦୁଇଟି ସଂଗୀତ । କିନ୍ତୁ ଏଇ ଜୀବନର ସିଂହଦ୍ୱାରକୁ ପାରିହୋଇ ଆଗାମୀ ଜୀବନର ବିସ୍ତୃତ ପ୍ରାଙ୍ଗଣରେ ଆମେ ଦୁହେଁ ମିଳିପାରିବା କି ପରସ୍ପରକୁ ?

ତୁମରି ବାଛୁ




ନିମାଇ ଭଟ୍ଟାଚାର୍ଯ୍ୟ

ଜନ୍ମ : ୧୯୩୧ । କଲିକତାରେ ଜନ୍ମ, କଲିକତାରେ ଶିକ୍ଷାଦୀକ୍ଷା ଏବଂ କଲିକତାରେ ସାମ୍ବାଦିକତା । ପରେ ୨୫ ବର୍ଷ ଯାଏଁ ରାଜଧାନୀ ଦିଲ୍ଲୀକୁ ନିଜର କର୍ମସ୍ଥଳୀ ରୂପେ ବାଛି ନେଇଥିଲେ । ଦିଲ୍ଲୀରେ ଡିପ୍ଲୋମାଟିକ୍ ତଥା ପଲିଟିକାଲ୍ ସାମ୍ବାଦିକ ହିସାବରେ କାର୍ଯ୍ୟରତ ଥିବା ସମୟରେ ଶ୍ରୀଯୁକ୍ତ ଭଟ୍ଟାଚାର୍ଯ୍ୟ ପୃଥିବୀର ଅଧିକାଂଶ ଦେଶକୁ ବାରମ୍ବାର ଭ୍ରମଣରେ ଯାଇଛନ୍ତି । ସେଇ ସୂତ୍ରରୁ ସୃଷ୍ଟି ହୋଇଛି ତାଙ୍କ ଭିତରେ ଉନ୍ନତ ଅଭିଜ୍ଞତା । ସେଇ ଅଭିଜ୍ଞତା ରୂପ ନେଇଛି ତାଙ୍କର ଅସଂଖ୍ୟ ଉପନ୍ୟାସରେ । ଅଦ୍ୟାବଧି ତାଙ୍କର ଶତାଧିକ ଉପନ୍ୟାସ ବଙ୍ଗଳା ସାହିତ୍ୟକୁ ଋଦ୍ଧିମନ୍ତ କରିତୋଳିଛି । ତାଙ୍କର ପ୍ରଥମ ଉପନ୍ୟାସ, 'ରାଜଧାନୀର ନେପଥ୍ୟେ' (୧୯୬୧)ର ପ୍ରାକ୍ କଥନ ଲେଖିଥିଲେ ରାଷ୍ଟ୍ରପତି ସର୍ବପଲ୍ଲୀ ଡକ୍ଟର ରାଧାକ୍ରିଷ୍ଣନ୍ । ଶ୍ରୀଯୁକ୍ତ ଭଟ୍ଟାଚାର୍ଯ୍ୟଙ୍କର କୃତି 'ମେମ୍ ସାହେବ୍' (୧୯୬୪) ବଙ୍ଗଳା ସାହିତ୍ୟ ଜଗତରେ ସୃଷ୍ଟି କରିଥିଲା ଅପୂର୍ବ ଶିହରଣ । ତାଙ୍କର ପ୍ରତିଟି ଉପନ୍ୟାସ ଅନନ୍ୟ – 'ଡିପ୍ଲୋମାଟ୍', 'ଭି.ଆଇ.ପି.', 'ପାର୍ଲାମେଣ୍ଟ ଷ୍ଟ୍ରିଟ୍', 'ଡିଫେନ୍ସ କଲୋନୀ', 'କକ୍‌ଟେଲ୍ ପାର୍ଟି', 'ତିନ୍‌କନ୍ୟା' ଇତ୍ୟାଦି ଇତ୍ୟାଦି ।


ଡଃ ପୂର୍ଣ୍ଣଚନ୍ଦ୍ର ମିଶ୍ର

ଜନ୍ମ : ତା ୨ । ୧୧ । ୧୯୩୬ । ସ୍ଥାନ : ଆଠମଲ୍ଲିକ (ଢେଙ୍କାନାଳ– ଅନୁଗୋଳ) । ସ୍ଥାନୀୟ ମହେନ୍ଦ୍ର ଉଚ୍ଚ ବିଦ୍ୟାଳୟରୁ ମାଟ୍ରିକ୍ (୧୯୫୪) । ନୂତନ ଭାବେ ସ୍ଥାପିତ ଏମ୍.ଇ. ସ୍କୁଲ (ସାନହୁଲା- ଆଠମଲ୍ଲିକ୍)ର ପ୍ରଥମ ପ୍ରଧାନ ଶିକ୍ଷକ (୧୯୫୪, ଜୁଲାଇରୁ ଡିସେମ୍ବର) । ସ୍ଥାନୀୟ ଏସ୍.ଡ଼ି.ଓ ଅଫିସ୍‌ରେ କିରାନୀ (୧୯୫୫-୧୯୬୨) । ରେଳ ବିଭାଗରେ କିରାନୀ (୧୯୬୨ରୁ ୧୯୬୪) । ଇତି ମଧ୍ୟରେ ଘରୋଇ ଭାବେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଆଇ.ଏ. (୧୯୬୨), ବି.ଏ. (୧୯୬୪) । ବେସରକାରୀ ଉଚ୍ଚ ବିଦ୍ୟାଳୟ କିଶୋରନଗରରେ ଶିକ୍ଷକତା (୧୯୬୪-୬୫) । ସରକାରୀ ଟ୍ରେନିଂ କଲେଜରୁ ବି.ଇଡ଼ି. (୧୯୬୫-୬୬) । ସରକାରୀ ମାଧ୍ୟମିକ ଉଚ୍ଚ ବିଦ୍ୟାଳୟମାନଙ୍କରେ ଶିକ୍ଷକତା (୧୯୬୭-୧୯୭୩) । 'ଶିକ୍ଷା' ଅଧ୍ୟାପକ ଭାବେ ସରକାରୀ ମହାବିଦ୍ୟାଳୟ, ସୁନ୍ଦରଗଡ଼, ରାଜ୍ୟଶିକ୍ଷା ପ୍ରତିଷ୍ଠାନ (ପରେ ଏସ୍.ସି.ଇ. ଆର୍‌ଟି ତଥା ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ) ଏବଂ ଡି.ପି.ଆଇ. ଏ.ଏସ.ଇ ବ୍ରହ୍ମପୁରରେ ଅଧ୍ୟାପକ ଏବଂ ପ୍ରାଧ୍ୟାପକ । ଇତି ମଧ୍ୟରେ ଶିକ୍ଷା ବିଷୟରେ ଡକ୍ଟରେଟ ଉପାଧି ଲାଭ (୧୯୮୯); ଶିକ୍ଷା ପ୍ରାଧ୍ୟାପକ ଭାବେ ଏସ.ସିଇ.ଆର୍‌ଟି ଓ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟରୁ ଅବସର ଗ୍ରହଣ (ନଭେମ୍ବର- ୧୯୯୪) । 'ଶିକ୍ଷା' ଅଧ୍ୟାପକ ଏବଂ ପ୍ରାଧ୍ୟାପକ ହିସାବରେ ଅନେକ ଶିକ୍ଷା ସମ୍ବନ୍ଧୀୟ ପୁସ୍ତକ ଅନୁବାଦ ଓ ରଚନା – ବିଶେଷତଃ ପ୍ରାକ୍ ବିଦ୍ୟାଳୟ ଶିକ୍ଷା ସମ୍ବନ୍ଧୀୟ ପୁସ୍ତକ । ଏତଦ୍ ବ୍ୟତୀତ ପ୍ରକାଶିତ ଅନୁବାଦ ସାହିତ୍ୟ : ଅସମୀୟା ଭାଷାରୁ 'ଜୀବନପଥେ', 'ଅଘରୀ ଆତ୍ମାର କାହାଣୀ', 'ମୃତ୍ୟୁଞ୍ଜୟ' ଓ 'ୟାର ଉଇଙ୍ଗମ୍' ଏବଂ ବଙ୍ଗଳା ଭାଷାରୁ 'ଡିପ୍ଲୋମାଟ୍' ଓ 'ଭି.ଆଇ.ପି.' ।